ସମାଜ ସଂସ୍କାରକ

# ବୈରାଗୀ ଚରଣ ମିଶ୍ରଙ୍କ

# ଆତ୍ମଜୀବନୀ








ମୟୂର ପବ୍ଲିକେସନସ୍

ସମାଜ ସଂସ୍କାରକ

# ବୈରାଗୀ ମିଶ୍ରଙ୍କ ଆତ୍ମ ଜୀବନୀ

ସମ୍ପାଦକ

ଆଚାର୍ଯ୍ୟ ଭାବାନନ୍ଦ

ମୟୂର ପବ୍ଲିକେସନ୍ସ
ଭୁବନେଶ୍ୱର

ସମାଜ ସଂସ୍କାରକ

# ବୈରାଗୀ ମିଶ୍ରଙ୍କ ଆତ୍ମଜୀବନୀ

ସଂପାଦକ

ଆଚାର୍ଯ୍ୟ ଭାବାନନ୍ଦ

ପ୍ରଚ୍ଛଦ

ମହାଭାବ ପ୍ରକାଶ

ପ୍ରକାଶକ

ମୟୂର ପବ୍ଲିକେସନ୍ସ

ଭୁବନେଶ୍ୱର

୧୯୯୯

ମୂଲ୍ୟ : ପଚାଶ ଟଙ୍କା ମାତ୍ର



ISBN : 81-86040-73-0

Samaja Sanskaraka

BAIRAGI MISHRANKA ATMA JEEVANI

Acharya Bhabananda (Ed.)

Cover Design : Mahabhava Prakash

1999

Mayur Publications

Bhubaneswar - 751 001, Orissa

Rupees Fifty Only

## ।। ପ୍ରକାଶକୀୟ ଅଭିମତ ।।

''ସ୍ୱଭାବ ନିୟତ ଜୀବନ ଯୁଦ୍ଧ'' ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଲେଖକଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ଏହାର ନିର୍ଦ୍ଦିଷ୍ଟ ତାରିଖ ସ୍ଥିର କରିବା ସମ୍ଭବ ହୋଇନାହିଁ । ବୈରାଗୀ ମିଶ୍ରଙ୍କର ଦେହାନ୍ତର କିଛିବର୍ଷ ପରେ କଟକର ଜେ. ମହାପାତ୍ର ଏଣ୍ଡ କୋ ୧୯୭୦ ମସିହାରେ ''ସମାଜ ସଂସ୍କାରକ ବୈରାଗୀ ମିଶ୍ର ଗ୍ରନ୍ଥାବଳୀ'' ପ୍ରକାଶ କରିଥିଲେ । ସେ ଗ୍ରନ୍ଥାବଳୀ ଏବେ ଦୁଷ୍ପ୍ରାପ୍ୟ । ଅଶୀ ଦଶକରେ ''ସ୍ୱଭାବ ନିୟତ ଜୀବନ ଯୁଦ୍ଧ'' ଓ ''ଗୀତା'' ପୁସ୍ତକ ଦୁଇଟି ଉପଯୁକ୍ତ ସମ୍ପାଦନା ସହିତ ପୁନଃ ପ୍ରକାଶ ପାଇଁ ବୈରାଗୀ ମିଶ୍ରଙ୍କର ପୁତ୍ର ଶ୍ରୀ ବସନ୍ତ କୁମାର ମିଶ୍ର ମୟୂର ପବ୍ଲିକେସନ୍‌ସକୁ ଲିଖିତ ଅନୁମତି ଦେଲେ ।

ଏ ଭିତରେ ଅଣଆନୁଷ୍ଠାନିକ ଭାବରେ ସମାଜ ସଂସ୍କାରକ ବୈରାଗୀ ମିଶ୍ର ଫାଉଣ୍ଡେସନ ପ୍ରତିଷ୍ଠା ହୋଇଗଲା ଓ ଫାଉଣ୍ଡେସନ ଏ ଦିଗରେ ଅଗ୍ରଣୀ ଭୂମିକା ନେବ ବୋଲି ବିଚାର କରାଯାଉଥିଲା । କିନ୍ତୁ ତାହା ଏ ପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ ।

ତେଣୁ ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ''ସ୍ୱଭାବ ନିୟତ ଜୀବନ ଯୁଦ୍ଧ''ର ସମ୍ପାଦିତ ସଂସ୍କରଣ **''ସମାଜ ସଂସ୍କାରକ ବୈରାଗୀ ମିଶ୍ରଙ୍କ ଆତ୍ମଜୀବନୀ''** ୧୯୯୯ରେ ପ୍ରକାଶ ପାଉଛି । ଏହି ସମ୍ପାଦନାକୁ ଅଧିକ ଗବେଷଣାଲବ୍ଧ ତଥ୍ୟଭିତ୍ତିକ ସମ୍ଭାରରେ ସମୃଦ୍ଧ କରିବାର ପରିକଳ୍ପନା ଥିଲେ ମଧ୍ୟ ଏହା ନାନାଦି କାରଣରୁ ସମ୍ଭବ ହେଲା ନାହିଁ । ଏ ଦିଗରେ ଅନେକଙ୍କର ଉତ୍ସାହ ଥିଲେ ମଧ୍ୟ, ଆନୁଷ୍ଠାନିକ କାର୍ଯ୍ୟକ୍ରମ ଗ୍ରହଣ କରିବାର ସମ୍ବଳ ଏକତ୍ର (ଉଭୟ ଆର୍ଥିକ ଓ ଗବେଷକଙ୍କର ଅଭାବ) କରାଯାଇ ପାରିଲା ନାହିଁ ।

ଶ୍ରୀଯୁକ୍ତ ବସନ୍ତ କୁମାର ମିଶ୍ର, ଆମ ଉପରେ ଏ ଦାୟିତ୍ୱ ଦେଇଥିଲେ ପ୍ରାୟ ୯ମ ଦଶକର ପ୍ରାରମ୍ଭରେ । ଏବେ ବିଂଶ ଶତାବ୍ଦୀ ଶେଷ ହେବାକୁ ଆଉ ଦେଢବର୍ଷ ରହିଲା । ହୁଏତ ଏ ଦିଗରେ ''ସମାଜ ସଂସ୍କାରକ ବୈରାଗୀ ମିଶ୍ର ଫାଉଣ୍ଡେସନ୍''ର ସମ୍ପାଦିକା ଭବିଷ୍ୟତରେ ଅଧିକ ଦାୟିତ୍ୱ ନେବେ । ତେଣୁ ଏ ଗ୍ରନ୍ଥର ''ସ୍ୱତ୍ୱ'' ଫାଉଣ୍ଡେସନ ହାତରେ ଛାଡ଼ି ଦିଆଯାଇଛି ।

ମୁଁ ବ୍ୟକ୍ତିଗତ ଭାବରେ କ୍ଷମା ମାଗି ନେଉଛି ଯେ ଯାହା ମୟୂର ପବ୍ଲିକେସନ୍‌ସ୍ ପକ୍ଷରେ ସମ୍ଭବ ସେତିକି କାର୍ଯ୍ୟ କରାଯାଇ ପାରିଛି । ଏହାଠାରୁ ଅଧିକ କରିବାର ସମ୍ବଳ ଅଭାବରୁ ଏ ''ଗ୍ରନ୍ଥ''ର ପ୍ରକାଶନ ଆଉ ବିଳମ୍ବ ନକରି ସମାପ୍ତ କରାଗଲା ।

ବୈରାଗୀ ମିଶ୍ର ସବୁବେଳେ କହୁଥିଲେ, ''ବିବେକାନୁମୋଦିତ କାର୍ଯ୍ୟ କରିବା ଦ୍ୱାରା ତୁମ ଜୀବନ ସାଫଲ୍ୟ ମଣ୍ଡିତ ହେବ'' । ଏହି ବାଣୀ ଯଦି ଉତ୍ତରପୁରୁଷଙ୍କୁ ପ୍ରଭାବିତ କରିପାରେ, ତେବେ ଆମର ଶ୍ରମ ସାର୍ଥକ ହେବ । ବୈରାଗୀ ମିଶ୍ରଙ୍କର କାର୍ଯ୍ୟାବଳୀ ଓ ରଚନା ଏକ ସଂଘର୍ଷମୟ ଜୀବନର ପ୍ରତିଫଳନ । ଏହାର ବ୍ୟାପ୍ତିକାଳ ଥିଲା ୧୮୮୫ ରୁ ୧୯୬୬ । ସେ ସମୟର ଭାରତ/ଓଡ଼ିଶାର ସମାଜ ସଂସ୍କାର ଆନ୍ଦୋଳନ ପରିପ୍ରେକ୍ଷୀରେ, ତାଙ୍କର ବ୍ୟକ୍ତିତ୍ୱର ନିଷ୍ପକ୍ଷ ଆଲୋଚନା ହେବା ଆବଶ୍ୟକ । ହୁଏତ ଭବିଷ୍ୟତରେ ଏ କାର୍ଯ୍ୟ ଫାଉଣ୍ଡେସନ ଗ୍ରହଣ କରିପାରେ । ଆମର ଦୋଷ ତ୍ରୁଟି ପାଇଁ କ୍ଷମା ମାଗିନେଉଛୁ ।

।। ଜୟ ସର୍ବୋଦୟ ।।

ଆଚାର୍ଯ୍ୟ ଭାବାନନ୍ଦ
ପ୍ରକାଶକ

ଅଗଷ୍ଟ ୧୫, ୧୯୯୯

# ସ୍ୱଭାବନିୟତ ଜୀବନ ଯୁଦ୍ଧ

ପ୍ରଥମ ସଂସ୍କରଣ




ଲେଖକ ଓ ପ୍ରକାଶକ

ଶ୍ରୀ ବୈରାଗୀ ଚରଣ ମିଶ୍ର

ବିଶ୍ୱକଲ୍ୟାଣ ସମିତି

ସେକ୍ ବଜାର, କଟକ-୧



ମୂଲ୍ୟ- ଟ ୧ (ଏକ ଟଙ୍କା)

# ନିବେଦନ

ବିଶୃଙ୍ଖଳାପୂର୍ଣ୍ଣ ଉପସ୍ଥିତ ମାନବ ସମାଜରେ ସତ୍ୟ, ସାମ୍ୟବାଦ
ବ୍ୟକ୍ତିଗତ ପୂର୍ଣ୍ଣ ସ୍ୱାଧୀନତା ବିଶ୍ୱଭ୍ରାତୃତ୍ୱ ଓ ବିଶ୍ୱଶାନ୍ତି
ପ୍ରତିଷ୍ଠା କରିବାକୁ କର୍ତ୍ତବ୍ୟ ବୋଧ କଲେ ଏବଂ ନିଜେ
ଅନ୍ତଃସୁଖ ଓ ଅନ୍ତଃଶାନ୍ତି ଉପଲବ୍ଧି କରିବାକୁ ହେଲେ
ଅନ୍ଧ ବିଶ୍ୱାସ, ଅନ୍ଧାନୁସରଣ ଓ ବୃଥାଡ଼ମ୍ବର ଉପରେ
ପ୍ରତିଷ୍ଠିତ ଉପସ୍ଥିତ ଅସ୍ୱାଭାବିକ ଜୀବନ ଯାତ୍ରାକୁ
ସ୍ୱଭାବ ନିୟତ କରନ୍ତୁ । ବହୁକାଳର ପୂର୍ବାଭ୍ୟାସ
ନିଜେ ପରିତ୍ୟାଗ କରି ନପାରିଲେ ମଧ୍ୟ ସର୍ବଦା
ସତର୍କ ରୁହନ୍ତୁ, ଯେପରି ଆମର ଭବିଷ୍ୟତ
ବଂଶଧରମାନେ ଆମକୁ ଅନୁକରଣ ନକରନ୍ତୁ
ଏବଂ ସେମାନଙ୍କର ଜୀବନଯାତ୍ରାକୁ
ସ୍ୱଭାବ ନିୟତ କରିବାକୁ ଶିଖନ୍ତୁ

ଲେଖକ

## ସମାଜ ସଂସ୍କାରକ

# ବୈରାଗୀ ମିଶ୍ରଙ୍କୁ କେହି ଚିହ୍ନିଲେ ନାହିଁ !

*ଆଚାର୍ଯ୍ୟ ଭାବାନନ୍ଦ*

୧୯୧୬ ମସିହାରେ ଲେଖିଲେ ଖଣ୍ଡିଏ ଛୋଟ ବହି 'ସୁଖାନ୍ୱେଷଣ' । ଏହି ବହିରେ ବୈରାଗୀ ମିଶ୍ର ଯେଉଁ କେତେକ ସୂଚନା ଦେଇଥିଲେ ତାହା ହିଁ ଥିଲା ତାଙ୍କର ଜୀବନ ଓ ଜୀବନାଦର୍ଶ । ''ଅନ୍ନବସ୍ତ୍ର ଅଭାବର କାରଣ ଅନୁସନ୍ଧାନ କରି ବିଳାସପ୍ରିୟ ଓ ଆଡମ୍ବରପ୍ରିୟ ଖର୍ଚ୍ଚ ସବୁରୁ ରହିତ ହେବାକୁ'' ସେ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ ।

ମୃତ୍ୟୁର ଅଳ୍ପକାଳ ପୂର୍ବରୁ ସେ ଦୁଃଖରେ କହିଥିଲେ ''ମୁଁ ଖୁବ୍ ନିକଟରେ ଚାଲିଯାଉଛି । ମୋତେ କେହି ଚିହ୍ନିଲେ ନାହିଁ ।'' ହୁଏତ ସେ କଥା ସତ୍ୟ । କାରଣ ତାହା ହୋଇଥିଲେ, ସେ ଓଡ଼ିଶାର ସୀମା ବାହାରେ ଓ ଭାରତବର୍ଷର ସାଂସ୍କୃତିକ ଇତିହାସର ପରିଧି ଭିତରେ ବାହାରେ ଚିହ୍ନିତ ହୋଇ ପାରିଥାନ୍ତେ ! କିନ୍ତୁ ଏକଥା ଉତ୍କଳୀୟମାନେ କାହିଁକି ବା କରନ୍ତେ !

ଭାରତବର୍ଷର ସାଂସ୍କୃତିକ ଇତିହାସରେ ଏକ ପ୍ରତିବାଦୀ ପୁରୁଷ ଭାବରେ ମୋହନ ଦାସ କରମଚାନ୍ଦ ଗାନ୍ଧି ୧୯୧୪ ମସିହାରେ ଭାରତ ଫେରିଲେ । କିନ୍ତୁ ଅବକ୍ଷୟମୁଖୀ ସମାଜ ଜୀବନକୁ ସଂସ୍କୃତ କରିବାର ପ୍ରଚେଷ୍ଟା ଆରମ୍ଭ ହେଲା ବହୁ ପରେ- ଯାହା ଏବେ ''ଗାନ୍ଧି ଚିନ୍ତନ'' ନାମରେ ଅଭିହିତ । କିନ୍ତୁ ବୈରାଗୀ ମିଶ୍ର ୧୯୧୬ ମସିହାରେ 'ଅସ୍ପୃଶ୍ୟତା ଦୂର କରିବା'' ''ସମ୍ପୂର୍ଣ୍ଣ ମିଥ୍ୟା ତ୍ୟାଗ କରିବା'', ''ଅଳ୍ପରେ ସନ୍ତୋଷ ହେବା'' ଓ ''କଦାପି ଋଣ ନକରିବା'' ସମ୍ପର୍କରେ ଯେଉଁ ସଚେତନତା ସୃଷ୍ଟି କରିବାକୁ ଚେଷ୍ଟା କରିଥିଲେ ତାହା ସେତେବେଳେ ସମ୍ଭବ ହୋଇନଥିଲା- ଏବେ ବି ହୋଇନାହିଁ, ତାଙ୍କର ଦେହାନ୍ତର ପ୍ରାୟ ୩୩ ବର୍ଷ ପରେ - ଏବେ ୧୯୯୯ରେ । ତାଙ୍କୁ ସେତେବେଳେ ''ଅଳ୍ପ କେତେକ ଲୋକ ଚିହ୍ନିବାର ପ୍ରୟାସ କରିଥିଲେ''- ବାକି ବିରୋଧ କରିଥିଲେ ସଂଖ୍ୟାଗରିଷ୍ଠ ଲୋକେ, ଯେଉଁମାନେ ସଦା ସର୍ବଦା ରହିଆସିଛନ୍ତି- ସ୍ଥିତି ସ୍ଥାପକତାର ପୂଜାରୀ ବା ରକ୍ଷଣଶୀଳତାର ବାବଦୂକ ।

ବୈରାଗୀ ମିଶ୍ର ଏକ ନିର୍ଭୀକ ବ୍ୟକ୍ତିଥିଲେ । ଏଭଳି ବ୍ୟକ୍ତିମାନେ ସମାଜରେ ସଦାସର୍ବଦା ବ୍ୟତିକ୍ରମ । ଏହି ''ବ୍ୟତିକ୍ରମ' ମାନେ ହିଁ ସମାଜର ମୋଡ଼ ବଦଳାନ୍ତି- ''ଅନ୍ଧାନୁସରଣ'' ଓ ''ବାହ୍ୟାଡମ୍ବର''କୁ ତ୍ୟାଗ କରି ଜୀବନ ପାଇଁ, ସମାଜ ପାଇଁ । ବୃହତ୍ତର ମାନବିକତା କ୍ଷେତ୍ରରେ ପ୍ରତିବେଦନ ସୃଷ୍ଟି କରିଯାନ୍ତି । ତେଣୁ ବୈରାଗୀ ମିଶ୍ର 'ଚିହ୍ନା' ପଡ଼ିବା କଥା । ସେ ତେଣୁ ଚିହ୍ନା ପଡ଼ିଯାଇଛନ୍ତି- ଇତିହାସରେ, ସମାଜ ସଂସ୍କାରର ବିବର୍ତ୍ତନଧାରାରେ- ଜଣେ ଯୁଗପୁରୁଷ ଭାବରେ- ଓଡ଼ିଶା ଭୂଇଁରେ । ଚିହ୍ନା ବ୍ରାହ୍ମଣର ପଇତା ଲୋଡ଼ା ନାହିଁ- ବୈରାଗୀ ମିଶ୍ରଙ୍କର ପଇତା ନଥିଲା, ସେ ଛିଣ୍ଡାଇ ଫୋପାଡ଼ି ଦେଇଥିଲେ- କିନ୍ତୁ ''ରକ୍ଷଣଶୀଳ ବ୍ରାହ୍ମଣମାନଙ୍କର'' ଉତ୍ପୀଡ଼ନ

ଭିତରେ ଜୀବନ କଟାଇଦେଲେ ପ୍ରାୟ ୮୧ ବର୍ଷ ଏକ ଆଦର୍ଶକୁ ପ୍ରତିପାଦିତ କରିବା ପାଇଁ ତାଙ୍କ ଜୀବନରେ ଓ କଟକ ସହରର ସୀମିତ ପ୍ରୟୋଗଶାଳାରେ ନିର୍ଭୀକ ଭାବରେ । ତାଙ୍କରି ଭାଷାରେ ''ଭୟ ଏକ ବ୍ୟାଧି.. ତୁମେ ପାପକୁ ସୁଦ୍ଧା ଭୟ କର ନାହିଁ । ... ଭୟର ଭଉଣୀ ଲଜ୍ଜା ।''

୧୮୮୫ ମସିହା ଡିସେମ୍ବର ୧୭ ତାରିଖରେ କଟକ ଜିଲ୍ଲା ସାଲେପୁର ଥାନା, ମୂଳବସନ୍ତ ଗ୍ରାମରେ ଜନ୍ମ- ଜଣେ ସାଧାରଣ ବ୍ରାହ୍ମଣ ପରିବାରରେ । ମାତ୍ର ୧୪ ବର୍ଷ ବୟସରେ ବିବାହ ଓ ୧୯୦୬ରେ ବାରିପଦା ହାଇସ୍କୁଲରୁ ଏଣ୍ଟ୍ରାନ୍ସ ପାସ କରି କଟକରେ ଦୁଇବର୍ଷ ଏଫ.ଏ. ପଢ଼ିଲେ । କିନ୍ତୁ ଆର୍ଥିକ ଅନାଟନରୁ ପଢ଼ା ଛାଡି ୧୯୧୨ରେ ଚାକିରି ଆରମ୍ଭକଲେ କଟକ କଚେରୀରେ ଜଣେ କିରାଣୀ ଭାବରେ । ତାହା ହିଁ ଥିଲା ତାଙ୍କର ବୃତ୍ତି- ଜୀବିକାର୍ଜନ ପାଇଁ- ସାରା ଜୀବନ । କିନ୍ତୁ ପ୍ରବୃତ୍ତି ଥିଲା ସ୍ୱତନ୍ତ୍ର । ସେହି ପ୍ରବୃତ୍ତିର ପ୍ରଚୋଦନାରେ ସେ ଜୀବନ ବିତାଇଲେ ଜଣେ ବୃତ୍ତିଭୋଗୀ କିରାଣୀ ଭାବରେ ନୁହେଁ; ଜଣେ ସଂସ୍କାରବାଦୀ ଯୁଗ ପୁରୁଷ ଭିତରେ ।

ଓଡ଼ିଶାର ''ନାରୀ ଆନ୍ଦୋଳନର'' ଇତିହାସରେ ବୈରାଗୀ ମିଶ୍ର ଜଣେ ପଥପ୍ରଦର୍ଶକ । କିନ୍ତୁ କାହିଁକି ବା ସେ ଏପରି ଏକ ''ଅମଡ଼ା ବାଟରେ'' ମାଡ଼ି ଚାଲିଲେ- ପରିବାର, ସମାଜ, ରକ୍ଷଣଶୀଳ ବ୍ରାହ୍ମଣମାନଙ୍କର ଦୌରାତ୍ମ୍ୟକୁ ଭ୍ରୂକ୍ଷେପ ନକରି ସେ ଆଗେଇ ଚାଲିଲେ । ଅବଶ୍ୟ ବୈରାଗୀ ମିଶ୍ରଙ୍କର ସମସ୍ତ ରଚନାବଳୀ (ପ୍ରାୟ ଛୋଟ ବଡ଼ ୪୫ ଖଣ୍ଡି ପୁସ୍ତକ) ସଂଗୃହୀତ ହୋଇ ପ୍ରକାଶ ପାଇଛି । କିନ୍ତୁ ସାହିତ୍ୟର, ଦର୍ଶନର, ନାରୀ ଆନ୍ଦୋଳନର ଇତିହାସର ମୂଳ ସମୀକ୍ଷକ ଆଲୋଚକମାନଙ୍କର ଦ୍ୱାରା ଏହା ଯେପରି ବିଶ୍ଳେଷିତ ହେବାର କଥା ତାହା ହୋଇନାହିଁ । ବୋଧହୁଏ ଏଇଥିପାଇଁ ବୈରାଗୀ ମିଶ୍ର ଦୁଃଖ ପ୍ରକାଶ କରି କହିଥିଲେ- ''ମତେ କେହି ଚିହ୍ନିଲେ ନାହିଁ ।''- ସ୍ୱାଭାବିକ ଖେଦୋକ୍ତି । କିନ୍ତୁ ସେ ଯେଉଁ ମୂଳଦୁଆ ପକାଇ ଦେଇଗଲେ, ତାକୁ କ'ଣ ''ଇତିହାସ'' ଅବହେଳା କରିପାରିବ । ତାଙ୍କ ରଚନାବଳୀ ତାଙ୍କର ''ମାନସ ବିଶ୍ଳେଷଣ''ରେ ଯଥେଷ୍ଟ ଉପାଦାନ ଯୋଗାଇ ପାରିବ କି ? ସେ ସମୟର ସରକାରୀ 'ଗୁପ୍ତ ତଥ୍ୟ', ଦଲୀଲ ଦସ୍ତାବିଜ୍ ପରୀକ୍ଷା କରାଯାଇ ନାହିଁ । କିମ୍ବା ତାଙ୍କ ସମୟର ତାଙ୍କ ସହଯୋଗୀ, ସମର୍ଥକମାନଙ୍କର ସ୍ମୃତି ସଂକଳନ କରାଯାଇପାରି ନାହିଁ- ତେଣୁ ତାଙ୍କୁ କେହି ଏବେ ବି ଚିହ୍ନିଲେ ନାହିଁ ।

ଏଇ ବୈରାଗୀ ମିଶଙ୍କୁ ମୁଁ ଖୁବ ନିକଟରୁ ଦେଖିଥିଲି । ଆମ ଘରର ପରିବେଶ ଭିତରେ । ତାଙ୍କ ବଡ଼ ଭଉଣୀ 'ପୁନି ନାନୀ' ଥିଲେ ମୋର ଜେଜେମା । ଏଇ ଭାଇ ଭଉଣୀଙ୍କର ଅନାବିଳ ସ୍ନେହ ତାଙ୍କ ଦୁଇଜଣଙ୍କୁ ଯେତିକି ନିକଟତର କରିଥିଲା, 'ବୈରାଗୀ ଅଜା' ଥିଲେ ସେତିକି ନିକଟତର ଆମ ପରିବାର ସହିତ- ବିଶେଷ ଭାବରେ ମୋ ବାପାଙ୍କ ସହିତ । ମୋ ଦେଖିବାରେ ବାପା ଥିଲେ କ୍ଷଣକୋପୀ, ଜିଦ୍‌ଖୋର ଓ ନିଜ ସିଦ୍ଧାନ୍ତରେ ଅଟଳ । କିନ୍ତୁ ତାଙ୍କ ମାମୁଁଙ୍କ ନିକଟରେ (ବୈରାଗୀ ମିଶ୍ର) ସେ ଥିଲେ ସତେ ଯେପରି ''ମୂଷାଟିଏ'' । ଏଇ ବୈରାଗୀ ମିଶ୍ର ତେଣୁ ଅବସର ନେବା ପରେ ଯଦି କେବେ କେଉଁଠି ମାସାଧିକ କାଳକଟେଇବାକୁ ସଂକୋଚ

କରୁନଥିଲେ- ସେ ସ୍ଥାନଟି ଥିଲା ''ମୋ ବାପାଙ୍କ ରହଣୀ ସ୍ଥାନ ସବୁ (ଓଡ଼ିଶାର ବିଭିନ୍ନ ସ୍ଥାନରେ)। ତେଣୁ ପିଲାବେଳୁ କେଜାଣି କେମିତି ''ବୈରାଗୀ ଅଜା'', ମୋ ଜୀବନର ଜଣେ ମାର୍ଗ ଦର୍ଶକ ହୋଇଗଲେ । ତାଙ୍କଦ୍ୱାରା କେମିତି ମୁଁ ପ୍ରଭାବିତ ହୋଇ ପଡ଼ିଲି ତାର ସୂଚନା ଅନ୍ୟତ୍ର ଦିଆଯାଇପାରେ । ଏତିକି କହିଲେ ବୋଧହୁଏ ଯଥେଷ୍ଟ ହେବ ଯେ ତାଙ୍କରି ପାଖରେ ବସି ମୁଁ ୧୨ ବର୍ଷ ବୟସରେ 'ଗୀତା' ପଢ଼ିବା ଶିଖିଥିଲି । ଆଉ ଏବେ ବି ମନେ ପଡୁଛି ତାଙ୍କ ସହିତ ''ଆଳାପ ଆଲୋଚନା'' ଓ ବାଳ ସୁଲଭ ଯୁକ୍ତିତର୍କରେ ମୁଁ ପ୍ରଶ୍ନ କରୁଥିଲି ''ଧର୍ମ'' କଣ ? ଆଉ ଗୀତାରେ ଏ ଧର୍ମ ବିଭିନ୍ନ ଭାବରେ ପ୍ରୟୋଗ କରାଯାଇଛି କାହିଁକି ? ମୋଟାମୋଟି ଭାବରେ ''ରକ୍ଷଣଶୀଳତା''ରୁ ମତେ ମୁକ୍ତ କରିବା ଦିଗରେ ତାଙ୍କର ଅବଦାନ ଯଥେଷ୍ଟ । କାରଣ ତାଙ୍କୁ କେହି ''ଚିହ୍ନିଲେ ନାହିଁ'' ସିନା ମୁଁ ଖୁବ୍ ନିବିଡ ଭାବରେ ଚିହ୍ନି ପକେଇଲି ।

ସେ ବୈରାଗୀ ମିଶ୍ର ହଠାତ ନାରୀମଙ୍ଗଳ ସମିତି ଗଠନ କଲେ କାହିଁକି ? ମୁଁ ଆଈଙ୍କୁ ଦେଖିନାହିଁ । ଅର୍ଥାତ୍ ମୋର ଜନ୍ମ ବେଳକୁ ''ଆଈ''ଙ୍କର ଦେହାନ୍ତ ହୋଇ ଯାଇଥିଲା (୧୯୨୫) । ବୈରାଗୀ ମିଶ୍ର ଥିଲେ ଏକରକମ ଏକ ନିଃସଙ୍ଗ ବ୍ୟକ୍ତି- ଚିନ୍ତା, ଚେତନା ଓ କାର୍ଯ୍ୟକ୍ରମରେ ଅଂଶଗ୍ରହଣ, ଗୀତାର ସାମାଜିକ ବ୍ୟାଖ୍ୟା ସବୁ ସହିତ- ''ବିଧବା ବିବାହ'', ଟଙ୍କିକିଆ ଉପବୀତ ଗ୍ରହଣ, ବିନା ଯୌତୁକରେ ବିବାହ କର୍ମରେ, ପୌରୋହିତ୍ୟରେ ସେ ସାରା ଜୀବନ କଟାଇ ଦେଲେ । ୧୯୧୨ରୁ ୧୯୪୨ ମଧ୍ୟରେ ଚାକିରି ଜୀବନରେ ସେ ବ୍ରିଟିଶ ରାଜକର୍ମଚାରୀଙ୍କ ନିକଟରେ ଜଣାଇଥିଲେ ଜଣେ 'ପ୍ରତିବାଦୀ ପୁରୁଷ' ଭାବରେ- କେହି କେହି ତାଙ୍କୁ ''ଗାନ୍ଧି ଚେଲା'' ଆଖ୍ୟା ବି ଦେଇଥିଲେ ।

''ସମାଜ ସଂସ୍କାର'' ଧାରା ଭିତରେ ବହୁ ସମସ୍ୟା ଭିତରୁ ସେ 'ନାରୀମଙ୍ଗଳ' ଚିନ୍ତାରେ କାହିଁକି ଉଦ୍‌ବୁଦ୍ଧ ହେଲେ, ସେ ପ୍ରଶ୍ନର କୌଣସି ସନ୍ତୋଷଜନକ, ତଥ୍ୟଭିତ୍ତିକ ବିଚାର ବିଶ୍ଳେଷଣ ଏବେ ବି ହୋଇନାହିଁ । ସେ କାଳର ସମ୍ବାଦପତ୍ର, ସରକାରୀ ନଥି ଭିତରେ କିଛି ହୁଏତ ଲୁକ୍କାୟିତ ଭାବରେ ଥାଇପାରେ । ହୁଏତଃ ଏଇ ତଥ୍ୟ କେବେ ଆଲୋକକୁ ଆସିପାରେ । କିନ୍ତୁ ''ଜନଶ୍ରୁତି'' ତ ଖୁବ୍ ଶୀଘ୍ର ଲୋପ ପାଇଯିବ- ସେ କାଳରେ ଓ ଏବେବି ସେ ସବୁ ସ୍ମରଣରୁ ଆସ୍ତେ ଆସ୍ତେ ହଜିଯାଉଛି । ତେଣୁ 'ବୈରାଗୀ ମିଶ୍ର'ଙ୍କର ପ୍ରକୃତ ପରିଚୟ ବୋଧହୁଏ ଧରାପଡ଼ିବ ନାହିଁ । ସେହିଭଳି ଏକ 'ଜନଶ୍ରୁତି'ର କାହାଣୀ ଶୁଣିଥିଲି ପିଲାବେଳେ ।

''କଟକରେ ଚାକିରି କରିବା ସମୟରେ ସେ ସେତେବେଳେ ଏକଲା ରହୁଥାନ୍ତି । (ପରେ ଗାଁ ଛାଡି ପରିବାର ସହ କଟକ ଚାଲିଆସିଲେ ଓ ସାରା ଜୀବନ କଟେଇଲେ ଶେଖ ବଜାରରେ) କୌଣସି ଏକ ଛୁଟିରେ ଗାଁକୁ ଚାଲିଲେ- ସ୍ତ୍ରୀ ରହୁଥାନ୍ତି ଗାଁରେ- ମୂଳବସନ୍ତରେ । ଶାଶୁ ବୋହୂ ଦୁଇଜଣ । ବୈରାଗୀ ମିଶ୍ର ଯୁବକ । କଟକରୁ ଗାଁକୁ ଗଲାବେଳେ ସାଙ୍ଗରେ ନେଲେ ଡିବିରିଟିଏ । କିଛି କିରାସିନି ତେଲ ଓ ଦିଆସିଲି କାଠିର ପେଡିଟିଏ । ସେ କାଳରେ ଦିନବେଳା ନିଜ ସ୍ତ୍ରୀ ସଙ୍ଗରେ କଥାଭାଷା ବି ସମ୍ଭବପର ନଥିଲା । ତେଣୁ ଗାଁର ଗଭୀର ରାତିରେ ତାଙ୍କ ଘରେ ଡିବିରି

ଲଗାଇ, ସ୍ତ୍ରୀଙ୍କ ସହିତ କଥାଭାଷା ହେବା ପାଇଁ ସରଞ୍ଜାମ ସବୁ ନେଇ ଗାଁକୁ ଗଲେ । ରାତିରେ ଡିବିରି ଜାଳି ସ୍ତ୍ରୀଙ୍କ ସହିତ୍ର କଥାଭାଷା ହେଲେ । କିନ୍ତୁ ତାଙ୍କ ଅଜାଣତରେ ସେହି ଡିବିରିର ଆଲୁଅ କବାଟର କଣାବାଟେ ବାହାରକୁ ଦେଖାଯାଉଥିବ ବୋଲି ତାଙ୍କୁ ଜଣାନଥିଲା । ପରଦିନ ସକାଳେ ଶାଶୁ ବୋହୂ ବିରୂପା ନଈକୁ ଗାଧୋଇବାକୁ୍ ଗଲାବେଳେ ଶାଶୁ ବୋହୂଙ୍କୁ ଖୁବ୍ ଗାଳିଦେଲେ- କାରଣ ଥିଲା- '' ଆଲୁଅରେ ସ୍ୱାମୀ ସହିତ କଥାବାର୍ତ୍ତା '' । ଏ ଗାଳି ସହିନପାରି ଆଈ (ଅର୍ଥାତ ବୈରାଗୀ ମିଶ୍ରଙ୍କର ସ୍ତ୍ରୀ) ବାଟରୁ ''କନିଅର ମଞ୍ଜି'' ଗୋଟାଇ ଅଣ୍ଟାରେ ମାରିଲେ । ଉଦ୍ଦେଶ୍ୟ ଘରେ ପହଞ୍ଚିଲେ 'କନିଅର ମଞ୍ଜି' ବାଟି ପିଇଦେବେ- ଶାଶୁଘର ଗଞ୍ଜଣା ସହିପାରିବେନି । ଲୁଗା ପାଲଟୁ ପାଲଟୁ କନିଅର ମଞ୍ଜି ଅଣ୍ଟାରୁ ଗଳି ପଡ଼ିଲା । ପୁଣି ହେଲା ଗାଳି- ଶାଶୁଙ୍କର ।''

ଏଇ ଘଟଣାଟି ବିଷୟରେ ହୁଏତ ଆଈ ଅଜାଙ୍କୁ କ'ଣ କହିଥିବେ- ଆଉ 'ନାରୀମାନଙ୍କର' ସମସ୍ୟା, ବୈରାଗୀ ମିଶ୍ରଙ୍କୁ ବ୍ୟଥିତ କରିଥିବ । ତେଣୁ ସାରା ଜୀବନ କାର୍ଯ୍ୟକ୍ରମ ପରେ କାର୍ଯ୍ୟକ୍ରମ ନାରୀମାନଙ୍କର ମଙ୍ଗଳ ପାଇଁ । ସେଇଥିପାଇଁ ଗଢ଼ା ହୋଇଥିଲା । **''ନାରୀ ମଙ୍ଗଳ ସମିତି ''** (୧୯୩୦)- ଆନୁଷ୍ଠାନିକତା କ୍ଷେତ୍ରରେ ଏହା ବୋଧହୁଏ ପ୍ରଥମ ପ୍ରଚେଷ୍ଟା । ଏଇଥିପାଇଁ ଶାସ୍ତ୍ର ଅଧ୍ୟୟନ, ନାରୀମାନଙ୍କ ସମ୍ପର୍କରେ ବ୍ୟାଖ୍ୟା ଆଦି ବଢ଼ି ବଢ଼ି ଚାଲିଲା- ସାରା ଜୀବନ କେହି କଣ ବିଶ୍ୱାସ କରିପାରିବ ଯେ ଜଣେ ସାଧାରଣ କିରାଣୀ, ସରକାରୀ କଳର ପରିସୀମା ଭିତରେ ରହି ଏପରି ବୈପ୍ଳବିକ ଜୀବନଧାରା ସୃଷ୍ଟି କରିପାରିବ । ତେଣୁ ବୈରାଗୀ ମିଶ୍ରଙ୍କୁ ଅନେକ ଚିହ୍ନିଲେ- ଯେଉଁମାନେ ନିରାଶ୍ରୟା, ସମାଜ ଦ୍ୱାରା ପରିତ୍ୟକ୍ତା, ଶୋଷିତ । ସେଇମାନଙ୍କର ସଂସାର ଭିତରେ ''ବୈରାଗୀ ମିଶ୍ରେ'' ରହିଗଲେ ଏକ 'ଗୁରୁ' ଭାବରେ ବହୁ 'ବିବରା'ଙ୍କର ବିବାହର ପୁରୋଧା ଭାବରେ । ତାଙ୍କର ବାଣୀ ଏବେ ବି ମନେ ପଡୁଛି- ''ବିବାହକୁ ବ୍ୟବସାୟରେ ପରିଣତ କରନ୍ତୁ ନାହିଁ ।''

ଏବେ ବି ମନେ ପଡୁଛି ପରିକ୍ଷିତ ଦାଶ ଶର୍ମାଙ୍କର 'ନୈଷ୍ଠିକ ବ୍ରାହ୍ମଣ'ର ଭୂମିକା ଓ 'ବୈରାଗୀ ମିଶ୍ରଙ୍କର' 'ସଂସ୍କାରବାଦୀ ଭୂମିକା'ର ଚଢ଼ା ଉତାର- ଖବର କାଗଜ ପୃଷ୍ଠାରେ ସେ ସବୁ ଏବେ ବି ଆଲୋଚନାର ପରିସରକୁ ଆସିନାହିଁ । ତେଣୁ ଓଡ଼ିଶାର ନାରୀ ଆନ୍ଦୋଳନରେ ଇତିହାସ ଯଦି କେବେ ଲେଖାଯାଏ (ଅନ୍ତତଃ ୧୯୧୨- ୧୯୪୨) ତେବେ ବୈରାଗୀ ମିଶ୍ର ନିଶ୍ଚୟ ପୁଣିଥରେ 'ଚିହ୍ନା' ପଡ଼ିବେ- ଜଣେ ଅଗ୍ରଗାମୀ ଚିନ୍ତାଧାରାର ଚିନ୍ତକ ଓ 'ସଂସ୍କାର ଚେତନା'ର ଉଦ୍‌ଗାତା ଭାବରେ ।

ଏହି ପୁସ୍ତକଟି ସମ୍ପାଦନା କଲାବେଳେ ଖୁବ୍ 'ହତାଶା'ର ସମ୍ମୁଖୀନ ହୋଇଛି । ତାଙ୍କ ସମ୍ପର୍କିୟ ଉପାଦାନ ସଂଗ୍ରହ କରିବାକୁ ଯାଇ, ଓଡ଼ିଶାର ବିଭିନ୍ନ ବିଶ୍ୱବିଦ୍ୟାଳୟର 'ନାରୀ ଅଧ୍ୟୟନ କେନ୍ଦ୍ର'ର ପରିଚାଳିକାମାନଙ୍କୁ ପରାମର୍ଶ ଦେଇ ବି ତାଙ୍କ ସମ୍ପର୍କରେ ବିଶେଷ ଅଲୋଚନାର ମାର୍ଗ ସୃଷ୍ଟି ହୋଇପାରିଲା ନାହିଁ ।

ତେଣୁ ଏବେ ତାଙ୍କର ଦୁଷ୍ପ୍ରାପ୍ୟ ''ସ୍ୱଭାବ ନିୟତ ଜୀବନ ଯୁଦ୍ଧ''ର ପୁନଃ ମୁଦ୍ରଣ କଲାବେଳେ- ତାର ପରିବର୍ତ୍ତିତ ନାମ ରଖାଯାଇଛି ''ସମାଜ ସଂସ୍କାରକ ବୈରାଗୀ ମିଶ୍ରଙ୍କର ଆତ୍ମ ଜୀବନୀ''- ତାଙ୍କ ସମ୍ପର୍କରେ ଅଧ୍ୟୟନ କରିଥିବା କେତେକଙ୍କର ଲେଖା ଓ କେତେକ ଲେଖାର 'ନିର୍ବାଚିତ ଅଂଶ ପରିଶିଷ୍ଟରେ ଦିଆଯାଇଛି । ଆଶା କରାଯାଉଛି ଯେ ହୁଏତ ଭବିଷ୍ୟତରେ ଅନ୍ୟମାନେ ''ବୈରାଗୀ ମିଶ୍ରଙ୍କୁ'' କେବଳ ଓଡ଼ିଶା ଭିତରେ ନୁହେଁ, ଭାରତୀୟ ନାରୀ ଆନ୍ଦୋଳନର ପରିପ୍ରେକ୍ଷୀରେ, ପୁଣି **'ବିଶ୍ୱ କଲ୍ୟାଣ'**(୧୯୪୯) ଦୃଷ୍ଟିରୁ ଆବିଷ୍କାର କରିବେ । କାରଣ ସେ ଶେଖ ବଜାରରେ ବସି ବାରଣାସୀ ବା ମାନ୍ଦ୍ରାଜ ବୁଲିଯାଇ 'ବିଶ୍ୱର ଚିନ୍ତନ' ସହିତ ଯୋଗସୂତ୍ର ରଖି ପ୍ରତିଷ୍ଠା କରିଥିଲେ- ''ବିଶ୍ୱ କଲ୍ୟାଣ ସମିତି' । ଏବର 'ଜଗତୀକରଣ ପ୍ରକ୍ରିୟା'ର ଆଲୋଚନା କ୍ଷେତ୍ରରେ ବୈରାଗୀ ମିଶ୍ରଙ୍କର 'ବିଶ୍ୱ କଲ୍ୟାଣ ସମିତି'ର ଦାର୍ଶନିକ ଭାବଧାରା ଆବିଷ୍କାର କରିବା ହୁଏତ ଭବିଷ୍ୟତ ବଂଶଧରଙ୍କୁ, ତାଙ୍କ ମାଟି, ପାଣି, ପବନ ସହିତ ପରିଚିତ କରାଇ ଦେଇପାରେ । ସେହି ଦୃଷ୍ଟିରୁ ହୁଏତ ବୈରାଗୀ ମିଶ୍ରଙ୍କର ପରିଚିତ ରହିଯିବ- ଜଣେ ଅଗ୍ରଗାମୀ ଓଡ଼ିଆ ଚିନ୍ତକ ଭାବରେ । ଏ ସମ୍ମାନ ଦେବାକୁ ଓଡ଼ିଆ ଭାଷାଭାଷୀମାନେ ସଚେଷ୍ଟ ହେଲେ- ବୈରାଗୀ ମିଶ୍ରଙ୍କୁ ସମସ୍ତେ ଚିହ୍ନିବେ- ନିଜର ଭବିଷ୍ୟତର ମାର୍ଗ ସନ୍ଧାନ ପାଇଁ ।

ଆଶା କରୁଛି, ଭବିଷ୍ୟତରେ ତାଙ୍କ ସମ୍ପର୍କରେ ଅଧିକ ତଥ୍ୟ ଆବିଷ୍କୃତ ହେବ ଓ ମଧ ପରିବ୍ୟାପ୍ତ ଘଟିବ ।

ରାଉରକେଲା
୧୬.୬.୯୯

# ସ୍ଥିତଧୀ

*ଗଗନେନ୍ଦ୍ର ନାଥ ଦାଶ*

୧. ସେ ଆମ ଅଞ୍ଚଳର ଜଣେ ପ୍ରବାଦପୁରୁଷ ଥିଲେ । ମୋ ପିଲାଦିନେ ଆମ ଅଞ୍ଚଳରେ ତାଙ୍କୁ - ଓ ଜନ-ମାନସରେ ତାଙ୍କ ସମାଜ ସଂସ୍କାର ଉଦ୍ୟମର ଉଦ୍ଦାମତା ଓ ଏପରି କି ଉନ୍ମତ୍ତତାକୁ - କେନ୍ଦ୍ରକରି ଅନେକ ଜନଶ୍ରୁତି ପ୍ରଚଳିତ ଥିଲା (ଓ ଏବେ ବି ହୁଏତ ଥାଇପାରେ) । ସେଥିରେ ସେ ପୁଣି ଥିଲେ ମୋର ସମ୍ପର୍କୀୟ ପିଉସା । ମୋର ବାପା ମଧ୍ୟ ଶେଷ ପର୍ଯ୍ୟନ୍ତ ତାଙ୍କ ପ୍ରତି ଅନୁରକ୍ତ ଓ ଅକୃତ୍ରିମ ଶ୍ରଦ୍ଧାସମ୍ପନ୍ନ ଥିଲେ; ଥିଲେ ମଧ୍ୟ ବେଶ କିଛି କାଳପାଇଁ ତାଙ୍କ ସମାଜ ସଂସ୍କାର କାର୍ଯ୍ୟକ୍ରମର ଜଣେ ଘନିଷ୍ଠ ସହଯୋଗୀ । (ଆମ ସମାଜରେ ନାରୀମାନଙ୍କ ସ୍ଥାନ ଓ ସମସ୍ୟା ସମ୍ପର୍କରେ ସେ ଲେଖିଥିବା କେତେକ ପୁସ୍ତକ ମୋ ବୋଉକୁ ଉପହାର ଦେଇ ସେ ତାକୁ ରକ୍ଷଣଶୀଳତାର ନିର୍ମୋକରୁ ମୁକ୍ତ ହେବାପାଇଁ ଅନୁପ୍ରେରିତ କରିଥିଲେ । ମୋ ବୋଉର ବହି ଆଲମାରୀରୁ ଉପହାର ପୃଷ୍ଠାରେ ତାଙ୍କ ହସ୍ତଲିପିରେ ବୋଉର ନାଁ ଲେଖାଥିବା 'ନାରୀମଙ୍ଗଳ' ପୁସ୍ତକ ମୁଁ ପାଇଛି ।) ମୋର ସାନବାପା ବା କକେଇଙ୍କ ପୁଅ ଭାଇ ମଧ୍ୟ ଥିଲେ ତାଙ୍କର ଜଣେ ଭକ୍ତ । ମୋ ଛାତ୍ରାବସ୍ଥାରେ ମୁଁ ପଢୁଥିବା ବଡ଼ଚଣା ସ୍କୁଲକୁ ସେ ଅନେକଥର ଆସିଥିଲେ; ବେଳେ ବେଳେ ଆମର ଶିକ୍ଷକମାନଙ୍କ ସହ ସ୍କୁଲ ହଷ୍ଟେଲରେ ରାତ୍ରୀଯାପନ ମଧ୍ୟ କରୁଥିଲେ । ଆମମାନଙ୍କ ସହ ଥରେ ତେଲିଗଡଠାରେ ହୋଇଥିବା ବଣଭୋଜୀରେ ସେ ଯୋଗ ବି ଦେଇଥିଲେ । ଏଇପରି ଭାବରେ ମୁଁ ତାଙ୍କ ନିକଟ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଥିଲି । ତେଣୁ ତାଙ୍କ ସମ୍ପର୍କରେ ଆଜି କିଛି ଲେଖିବା ବେଳେ ମୋର ଭାବପ୍ରବଣତା ସୃଷ୍ଟି ହେବା ସ୍ୱଭାବିକ । ମୁଁ କିନ୍ତୁ ନିଜକୁ ସେ ଭାବପ୍ରବଣତାରୁ ମୁକ୍ତ କରି ଏକାନ୍ତ ବସ୍ତୁନିଷ୍ଠ ଭାବରେ ନିମ୍ନରେ ତାଙ୍କ ବ୍ୟକ୍ତିତ୍ୱ ଆବିଷ୍କାର କରିବାର - ହୁଏତ କିଛି ପରିମାଣରେ ଆକଳନ କରିବାର - ଉଦ୍ୟମ କରିବି ।

ତେବେ ପୁଣ୍ୟଶ୍ଳୋକ ବୈରାଗୀ ମିଶ୍ର (-ସେଇ ନାମରେ ସେ ପରିଚିତ-)ଙ୍କ ମହିମାନ୍ୱିତ ବ୍ୟକ୍ତିତ୍ୱର ସମ୍ପୂର୍ଣ୍ଣ ଓ ଯଥାର୍ଥ ଅବବୋଧ କିଛି ସହଜ କଥା ନୁହେଁ; ସହଜ କଥା ନୁହେଁ ମଧ୍ୟ ସେଇ ବହୁ ଉଜ୍ଜ୍ୱଳଦିଗ ସମ୍ପନ୍ନ ମହିମାମୟ ବ୍ୟକ୍ତିସତ୍ତାର ଯଥାର୍ଥ, ପ୍ରକୃତ ଓ ସମ୍ପୂର୍ଣ୍ଣ ପରିଚୟ ଦେବା । ତେଣୁ ମୁଁ ତାଙ୍କ ବ୍ୟକ୍ତିତ୍ୱର ମାତ୍ର କେତୋଟି ଦିଗ ଆବିଷ୍କାରର କିଞ୍ଚିତ ପ୍ରଚେଷ୍ଟା କରିବି । (ସେ ପ୍ରସଙ୍ଗରେ କହି ରଖେ, ମୁଁ ତାଙ୍କୁ ଯେପରି ଦେଖିଛି, ଯେପରି ଚିହ୍ନିଛି ଓ ତାଙ୍କର ଯେଉଁ ପରିଚୟ ପାଇଛି ସେ ସମ୍ପର୍କରେ ଅନ୍ୟମାନେ ମୋ ସହ ଏକମତ ହୁଏତ ହୋଇ ନପାରନ୍ତି - ଏ ବିଷୟରେ ମୁଁ ସମ୍ପୂର୍ଣ୍ଣ ଭାବରେ ସଚେତନ ।)

୨. ଏଇ ଆମ ଚିହ୍ନା ପୃଥିବୀର ସାଧାରଣ ମଣିଷଟିଏ କିପରି ସାଧନାବଳରେ ଜଣେ ଅସାଧାରଣ ବ୍ୟକ୍ତିରେ ପରିଣତ ହୋଇପାରେ, ସାଧାରଣ ମଣିଷଟି ଭିତରେ କିପରି ଏକ ଅସାଧାରଣ ବ୍ୟକ୍ତିସତ୍ତା ଆତ୍ମଗୋପନ କରିଥାଇପାରେ ଆଉ ଦୁର୍ଦ୍ଦମନୀୟ ସଙ୍କଳ୍ପର ଆଗ୍ନେୟ ସ୍ପର୍ଶରେ ହିଁ ତାହାର ଆତ୍ମଜାଗରଣ ଓ ପରିପ୍ରକାଶ ସମ୍ଭବ ହୋଇପାରେ - ଏ ସତ୍ୟର ପ୍ରକୃଷ୍ଟ ଉଦାହରଣ ଥିଲେ ସେ । ସେ ଥିଲେ ଆମର ଅତି ପରିଚିତ ଧୂଳିଧୂସରିତ ଏଇ ଧରଣୀର ସାମାନ୍ୟ ଶିଳାଖଣ୍ଡ; ସେ କିନ୍ତୁ ଥିଲେ ସୀମାଦ୍ରି ଓ ହିମାଦ୍ରିଠାରୁ ଅନେକ ଉଚ୍ଚ, ଅନେକ ବିଶାଳ, ଅନେକ ପବିତ୍ର ଓ ଅନେକ ମହାନ ଧରାଧର ।

୩. ଅଚଳ ଓ ଅଟଳ ପର୍ବତର କଠିନ ଓ କର୍କଶ ପ୍ରସ୍ତର ଆସ୍ତରଣର ଅନ୍ତରାଳରେ ସଦାନୀରା ନିର୍ଝରିଣୀଟିଏ ଲୁକ୍କାୟିତ ଥିବା ପରି ବାହାରକୁ ଭାବପ୍ରବଣତାହୀନ ଅତ୍ୟନ୍ତ କଠୋର ଓ ଏପରିକି ନିଷ୍ଠୁର ବୋଲି ପ୍ରତିଭାତ ହେଉଥିବା ସେଇ ଲୋକଟିର ହୃଦୟରେ ଆମ ସମାଜର ଦୁଃଖୀଜନମାନଙ୍କ ପାଇଁ, ବିଶେଷ ଭାବରେ ଦୁଃଖିନୀ ନାରୀ ମାନଙ୍କ ପାଇଁ, ଏପରି ଏକ ସମବେଦନାର ନିର୍ଝର, କରୁଣାର ପ୍ରସ୍ରବଣ ଯେ ଆତ୍ମଗୋପନ କରି ରହିଥିଲା ତା ଅକଳ୍ପନୀୟ । ଆଉ ତାଙ୍କର ଏଇ କରୁଣାର ପ୍ରସ୍ରବଣ ହିଁ ଥିଲା ତାଙ୍କର ସମସ୍ତ ସମାଜ ସଂସ୍କାର କାମନାର, ପ୍ରେରଣାର ଓ ସାଧନାର ମୂଳ ଉତ୍ସ ।

୩.୧. ଆମ ସମାଜର ଅଗଣିତ ଦୁଃଖୀଜନମାନଙ୍କ ଦୁଃଖର ମୂଳରେ ଥିବା ବହୁ କାରଣ ମଧ୍ୟରେ ଏକ ବଡ଼ କାରଣ ହେଉଛି ଧନର ଅସମ ବଣ୍ଟନ; ଆଉ ଧନର ଏଇ ଅସମ ବଣ୍ଟନ ମୂଳରେ ଥିବା ଅନ୍ୟାନ୍ୟ ବହୁ କାରଣ ମଧ୍ୟରେ ଗୋଟିଏ କାରଣ ହେଉଛି ସାମାଜିକ ବୃଥାଡମ୍ବର ଓ କେତେକ ବଦ୍ଧମୂଳ ଅନ୍ଧବିଶ୍ୱାସ । ତେଣୁ ସମାଜକୁ ଏପରି ବୃଥାଡ଼ମ୍ବର ଓ ଅନ୍ଧବିଶ୍ୱାସରୁ ବ୍ୟାଧିମୁକ୍ତ କରିବାପାଇଁ ସେ ବଦ୍ଧପରିକର ହୋଇଥିଲେ । ଏ ଥିଲା ତାଙ୍କ ସାମାଜିକ ବିପ୍ଳବର ଗୋଟିଏ ଦିଗ ।

୩.୨. ସେହିପରି ଆମ ସମାଜରେ ନାରୀ ଜାତିକୁ ପରଦା ଓ ଓଢଣାର ଆଢୁଆଳରେ ରଖାଯାଇ ସେମାନଙ୍କ ବ୍ୟକ୍ତି-ସତ୍ତାକୁ କ୍ଷୁଣ୍ଣ ଓ ଖର୍ବୀୟିତ କରାଯାଉଥିବାରୁ, ସେମାନଙ୍କ ବ୍ୟକ୍ତିସତ୍ତା ବିକାଶର ସୁଯୋଗକୁ ପ୍ରତି ପଦେ ପଦେ ପ୍ରତିହତ ପ୍ରତିରୋଧ କରାଯାଉଥିବାରୁ, ସେମାନଙ୍କୁ ଶିକ୍ଷାଲାଭରୁ ବଞ୍ଚିତ କରି ଅଜ୍ଞାନତାର ଅନ୍ଧକାର ମଧ୍ୟରେ ଆବଦ୍ଧ କରି ରଖାଯାଉଥିବାରୁ ସେ ସବୁର ନିରାକରଣ ଉଦ୍ଦେଶ୍ୟରେ ସେ ନାରୀମାନଙ୍କୁ ସଚେତନ କରାଇବା ସହ ସେ ଦିଗରେ ଆହୁରି ଅନେକ ପଦକ୍ଷେପ ତ ନେଇଥିଲେ, ପୁଣି ବିଧବା,ବିଶେଷ ଭାବରେ ବାଳୁତ ବିଧବା - ବା ତାଙ୍କରି ଭାଷାରେ 'ବିବରା' - ମାନଙ୍କ ବିବାହ ଓ ପୁନର୍ବିବାହ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ ପୂର୍ବକ ଏକ ବଡ଼ ସାମାଜିକ ଆନ୍ଦୋଳନର ସୂତ୍ରପାତ ମଧ୍ୟ କରିଥିଲେ ।

୩.୩. ତେବେ ଧାର୍ମିକ ବିପ୍ଳବ ଓ ସାମାଜିକ ଆନ୍ଦୋଳନ କ୍ଷେତ୍ରରେ ତାଙ୍କର ଭୂମିକାକୁ ଆହୁରି ତଳେଇ କରି ଦେଖିବାର ଆବଶ୍ୟକତା ରହିଛି । ଏ ପ୍ରସଙ୍ଗରେ ଲକ୍ଷ୍ୟ କରିବାର କଥା ଯେ ତାଙ୍କର ସାମାଜିକ କାର୍ଯ୍ୟକ୍ରମର - ବିଶେଷ ଭାବରେ ବିଧବା ବା ବିବରା ବିବାହ କାର୍ଯ୍ୟକ୍ରମର ସମର୍ଥନ ସେ ଆମ ପ୍ରାଚୀନ ହିନ୍ଦୁଶାସ୍ତ୍ର ଓ/ବା ଅଧୁନାଲୁପ୍ତ ପ୍ରାଚୀନ ପରମ୍ପରା ମଧ୍ୟରେ ଆବିଷ୍କାର କରିଥିଲେ । ଅନ୍ୟକଥାରେ ତତ୍‌କାଳୀନ ଲୋକାଚାରର ବିରୁଦ୍ଧାଚରଣ କରିପାରିଥାଏ, କିନ୍ତୁ ତାହାହିଁ ଶାସ୍ତ୍ରସିଦ୍ଧ, ତାହା ହିଁ ପ୍ରାଚୀନ ପରମ୍ପରାସିଦ୍ଧ ବୋଲି ସେ ଦାବୀ କରୁଥିଲେ; ସେ ଦାବୀ କରୁଥିଲେ ଯେ ସେ-ପ୍ରକୃତରେ ନୂତନ କିଛି କରୁନାହାନ୍ତି ଓ ଯାହା କରୁଛନ୍ତି ତା ହିନ୍ଦୁଶାସ୍ତ୍ର-ଓ-ପ୍ରାଚୀନ-ପରମ୍ପରା-ସମ୍ମତ ।

ଏ ପ୍ରସଙ୍ଗରେ ଯୁକ୍ତି କରାଯାଇପାରେ ଯେ ତାଙ୍କର ସାମାଜିକ କାର୍ଯ୍ୟକ୍ରମ ପଛରେ ପ୍ରାଚୀନ ହିନ୍ଦୁଶାସ୍ତ୍ର ଓ ପରମ୍ପରାର ସମର୍ଥନ ଥିବା ଦାବୀ ପ୍ରକୃତରେ ଥିଲା ଜନ-ସାଧାରଣଙ୍କୁ ପ୍ରଭାବିତ କରି ନିଜ ମତରେ ଦୀକ୍ଷିତ କରିବାର ଏକ କୌଶଳ (Strat-egy) ମାତ୍ର । ଅବଶ୍ୟ ଏପରି ବକ୍ତବ୍ୟର କୌଣସି ସାରବତ୍ତା ଥିବା ପରି ଆପାତତଃ ମନେ ହୁଏତ ନ ହୋଇପାରେ । କାରଣ ପ୍ରକୃତରେ ଏ କ୍ଷେତ୍ରରେ ତାଙ୍କର ଭୂମିକା ଆଦୌ ଧ୍ୱଂସାତ୍ମକ ନ ଥିଲା; ଥିଲା ଗଠନମୂଳକ, ସଂସ୍କାର ମୂଳକ ବା ସମାର୍ଜନାଭିମୁଖୀ । ସେ ଆମ ପାରମ୍ପରିକ ସମାଜ ସଂସ୍ଥାକୁ ସମ୍ପୂର୍ଣ୍ଣ ଭାବରେ ଧ୍ୱଂସ କରିଦେବାର, ଆମ ପାରମ୍ପରିକ ସମାଜର ସାରସତ୍ତା ବା ସଂରଚନା (Structure)କୁ ଭାଙ୍ଗି ପକାଇବାର ସ୍ୱପ୍ନ ଦେଖୁନଥିଲେ । ଆମ ପାରମ୍ପରିକ ସମାଜର ମୌଳିକ ପ୍ରକୃତିକୁ, ତାର ସଂରଚନା (Structure)କୁ ମୋଟାମୋଟି ବା ଊଣା ଅଧିକେ ଅକ୍ଷୁର୍ଣ୍ଣ ରଖି ସେଥିରେ କାଳକ୍ରମେ ସୃଷ୍ଟି ହୋଇଥିବା ମୂଲ୍ୟବୋଧର ଅବକ୍ଷୟଜନିତ ବିକୃତିକୁ ଧୋଇ ପୋଛି ସଫା କରିଦେବାର ଉଦ୍ୟମ ସେ କରିଥିଲେ ବା ଅନ୍ତତଃ ସେମିତି କରୁଥିଲେ ବୋଲି ହିଁ ସେ ମନେ କରୁଥିଲେ ।

ତେବେ ଶେଷରେ କିନ୍ତୁ ସ୍ୱୀକାର କରିବା ପାଇଁ ହେବ ଯେ ତାଙ୍କ ସାମାଜିକ କାର୍ଯ୍ୟକ୍ରମର ସମର୍ଥନ ହୁଏତ ସେ ପ୍ରାଚୀନ ହିନ୍ଦୁ ଶାସ୍ତ୍ରର ପୃଷ୍ଠାରୁ ଓ/ବା ଅଧୁନାଲୁପ୍ତ ପ୍ରାଚୀନ ପରମ୍ପରା ମଧ୍ୟରୁ ଖୋଜି ବାହାର କରୁଥିଲେ, ତେବେ ତା ସେ କରିଥିଲେ ତାଙ୍କ ସାମାଜିକ କାର୍ଯ୍ୟକ୍ରମର ପ୍ରାଥମିକ ପର୍ଯ୍ୟାୟର ନୁହେଁ, ଆଉ ଏକ ପରବର୍ତ୍ତୀ ପର୍ଯ୍ୟାୟରେ - ତାଙ୍କ କାର୍ଯ୍ୟକ୍ରମର ପ୍ରତିକୂଳାତ୍ମକ ସମାଲୋଚନାର ଉତ୍ତର ଦେବାପାଇଁ । କିନ୍ତୁ ପ୍ରାଥମିକ ପର୍ଯ୍ୟାୟରେ ଏ ସବୁ ହିନ୍ଦୁ ଶାସ୍ତ୍ର ଓ/ବା ଅଧୁନାଲୁପ୍ତ ପାଚୀନ ପରମ୍ପରା ଆଦୌ ତାଙ୍କର ପ୍ରେରଣାର ଉତ୍ସ ନଥିଲା । ଆମ ସମାଜରେ ନାରୀଜାତିର, ବିଶେଷ ଭାବରେ ବିଧବାମାନଙ୍କର ଦୁଃଖରେ ବିଗଳିତ ହୃଦୟ ତାଙ୍କର ହେତୁବାଦୀ ମନ ସେଇ ଦୁଃଖ ଅପନୋଦନ ପାଇଁ ଯାହା ଉଚିତ ବୋଲି ସ୍ୱାଧୀନ ଭାବରେ ଭାବିଥିଲା ତାହାକୁ

ହିଁ ଅକୁଣ୍ଠିତ ଚିତ୍ତରେ କର୍ମପନ୍ଥା ରୂପରେ ଗ୍ରହଣ କରିଥିଲେ । ସେତେବେଳକୁ ସେ ସବୁ ହିନ୍ଦୁ ଶାସ୍ତ୍ର ଓ/ବା ଅଧୁନାଲୁପ୍ତ ସେଇ ପ୍ରାଚୀନ ପରମ୍ପରା ସହ ସେ କେତେଦୂର ପରିଚିତ ଥିଲେ ତା ସନ୍ଦେହଜନକ । ଦୁଃଖିନୀ ନାରୀ ବା ନାରୀମାନଙ୍କ ଦୁଃଖ ହିଁ ଥିଲା ତାଙ୍କର ପ୍ରକୃତ ପ୍ରେରଣା-ଉତ୍ସ ।

୪. ସେ ପ୍ରସଙ୍ଗରେ ମନେ ରଖିବାପାଇଁ ହେବ ଯେ ବହିପଢ଼ା ପାଣ୍ଡିତ୍ୟ ତାଙ୍କର ନଥିଲା ବା ସେ ପାଣ୍ଡିତ୍ୟର ଆଡମ୍ବର ବା ଆଦର ସେ କେବେ କରୁନଥିଲେ । ବିଭିନ୍ନ ବିଷୟରେ ମନନ କରିବାର, ବିଭିନ୍ନ ସମସ୍ୟା ସମ୍ପର୍କରେ ଗଭୀର ଭାବରେ ଚିନ୍ତା କରି ତାକୁ ଆକଳନ ଓ ବିଶ୍ଳେଷଣ କରିବାର, କରି ତାର ସହଜ ସମାଧାନ ଆବିଷ୍କାର କରିପାରିବାର ଏକ ଅଦ୍ଭୁତ ସହଜାତ ଶକ୍ତି ତାଙ୍କର ଥିଲା । ଆଉ ଏ ମନନଶୀଳତା ହିଁ ଥିଲା ତାଙ୍କ ଚିନ୍ତାଧାରାରେ, ବିଚାରଧାର ରେ ଥିବା ସ୍ୱଚ୍ଛତା ଓ ମୌଳିକତାର ମୂଳରେ । ଏ ମନନଶୀଳତା ହିଁ ତାଙ୍କୁ ଏକ ଦାର୍ଶନିକର ସ୍ତରକୁ ଉନ୍ନୀତ କରିଥିଲା । ସେଥିପାଇଁ ସେ ନାସ୍ତିକତା ଓ ଆସ୍ତିକତାର ନୂତନ ସଂଜ୍ଞା ନିରୂପଣ କରିବାର ପ୍ରଚେଷ୍ଟା କରିଥିଲେ ।

ପୁଣି ଏଇ ମନନଶୀଳତା - ସଂଜାତ ମୌଳିକ ବିଚାରଧାରା ଓ ସ୍ୱାଧୀନ ଚିନ୍ତା ତାଙ୍କୁ ନିବୃତ କରି ରଖିଥିଲା ଅନ୍ଧାନୁସରଣ ଓ ପରାନୁସରଣ ପଥରୁ । ଏପରି ପରକୁ ଅନ୍ଧ ଭାବରେ ଅନୁସରଣ କରିବା ପ୍ରବୃତ୍ତିକୁ ଥଟ୍ଟା କରି ସେ ଅନେକ ସମୟରେ କହୁଥିଲେ - ''ବଡ ବିଲୁଆ ଭୁକିଲେ ହୋ ! ସାନ ବିଲୁଆ ଭୁକିଲେ ହୋ !'' ଆଉ ପ୍ରତ୍ୟେକ ସାଧାରଣ ଲୋକ ପକ୍ଷରେ ମଧ୍ୟ ଏଇ ମନନଶୀଳତାର - କିନ୍ତୁ ବହିପଢ଼ା ପାଣ୍ଡିତ୍ୟର ନୁହେଁ - ସ୍ୱାଧୀନ ଚିନ୍ତାର ଆବଶ୍ୟକତା ଓ ଉପଯୋଗିତାକୁ ସୂଚାଇ ବୁଦ୍ଧଦେବଙ୍କର ''ପ୍ରତ୍ୟେକ ବ୍ୟକ୍ତି ନିଜର ଆଲୋକ ହୁଅ'' ବାଣୀକୁ ତାଙ୍କ ସମ୍ପାଦିତ 'ବିଶ୍ୱକଲ୍ୟାଣ' ପତ୍ରିକାର ମଲାଟରେ ବଡ ବଡ ହରଫରେ ଛାପି ଦେଉଥିଲେ ।

୫. ପ୍ରସଙ୍ଗ କ୍ରମେ କହି ରଖେ ଯେ ମୁଁ ସ୍କୁଲରେ ପଢୁଥିବା ସମୟରେ ମଧ୍ୟଇଂରାଜୀ ଓ ଉଚ୍ଚଇଂରାଜୀ ବା ହାଇସ୍କୁଲ ଗୁଡିକର ସଂଖ୍ୟା ଅନେକ କମ୍ ଥିଲା । ତେଣୁ ଅଧିକାଂଶ ସ୍କୁଲରେ ଦୂରଦୂରାନ୍ତରୁ ଛାତ୍ରମାନେ ଆସି ହଷ୍ଟେଲରେ ରହି ପଢୁଥିଲେ । ଆଉ ଦୂରରୁ ଆସିଥିବା ଶିକ୍ଷକମାନେ ମଧ୍ୟ ଛାତ୍ରମାନଙ୍କ ସହ ହଷ୍ଟେଲରେ ରହୁଥିଲେ । ହଷ୍ଟେଲରେ ପ୍ରତ୍ୟେକ ଦିନ ସକାଳେ ଓ ସନ୍ଧ୍ୟାରେ ପ୍ରାର୍ଥନା ସଭା ଅନୁଷ୍ଠିତ ହେଉଥିଲା ଓ ସେଥିରେ ପ୍ରତ୍ୟେକ ଛାତ୍ର ଯୋଗ ଦେବାପାଇଁ ବାଧ୍ୟ ଥିଲେ । ବୈରାଗୀବାବୁ ଆମ ସ୍କୁଲକୁ ଆସିଲେ ବେଳେ ବେଳେ ସେଇ ହଷ୍ଟେଲରେ ପ୍ରଧାନ ଶିକ୍ଷକ ମାନଙ୍କ ସହ ଦିନେ ଅଧେ ରହି ଯାଉଥିଲେ । ଥରେ ସକାଳେ ପ୍ରାର୍ଥନା ସଭାପରେ ହଷ୍ଟେଲର ମାଟି କାନ୍ଥରେ ଚକ୍ ଖଡିରେ ବଡ ବଡ ହରଫରେ ଲେଖିଲେ, 'Do not pray' ଓ ଶିକ୍ଷକମାନଙ୍କୁ ସେ

ଉକ୍ତିର ଅର୍ଥ ଓ ମର୍ମ ବୁଝାଇ କ'ଣ ସବୁ କହିଲେ । ସେତେବେଳେ ତାଙ୍କର ବକ୍ତବ୍ୟ ଭଲ ଭାବରେ ବୁଝିପାରି ନଥିଲି; ଓ ଏବେ ବି ହୁଏତ ଠିକ୍ ଭାବରେ ବୁଝିପାରିନାହିଁ। ତେବେ ଯେତେଦୂର ସମ୍ଭବ ତାଙ୍କ ବକ୍ତବ୍ୟ ଥିଲା ଅଦୃଶ୍ୟ କୌଣସି ଶକ୍ତିକୁ ବା ଭଗବାନଙ୍କୁ ପ୍ରାର୍ଥନା କରିବା, ତାଙ୍କ ନିକଟରେ ଜଣାଣ କରିବା, ତାଙ୍କୁ କ'ଣ କ'ଣ ମାଗିବା ଅପେକ୍ଷା ନିଜେ ନିଜର କର୍ତ୍ତବ୍ୟ କରିବା ଉଚିତ୍, ନିଜେ ନିଜ ଉପରେ ନିର୍ଭର କରିବା ଉଚିତ; ପ୍ରତ୍ୟେକ ନିଜ ନିଜର କର୍ତ୍ତବ୍ୟ ଓ କର୍ମଫଳ ସମ୍ପର୍କରେ ସଚେତନ ହେବା ଓ ତଦନୁଯାୟୀ କାମ କରିବା ଉଚିତ । ଏହା ମଧ୍ୟରେ ବି ଥିଲା ତାଙ୍କ ସ୍ୱାଧୀନ ଚିନ୍ତାର ପ୍ରତିଫଳନ ।

୬. ତାଙ୍କ ବ୍ୟକ୍ତିତ୍ୱ ଓ ଚରିତ୍ରର ଆଉ ଏକ ବିଶେଷତ୍ୱ ହେଉଛି ସେ କେବଳ ସ୍ୱାଧୀନ ଭାବରେ ଚିନ୍ତା କରିପାରୁ ନଥିଲେ ବା ଯାହା ସେ ଚିନ୍ତା କରୁଥିଲେ ତାକୁ ନିର୍ଭୀକ ଭାବରେ ବ୍ୟକ୍ତ କରୁ ନଥିଲେ, ତାକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଆଗଭର ହେଉଥିଲେ ସମସ୍ତ ବାଧା ବିଘ୍ନ, ପ୍ରତିକୁଳ ପରିସ୍ଥିତିକୁ ଭ୍ରୂକ୍ଷେପ ନକରି । ଯାହା ସେ ଉଚିତ ବୋଲି ମନେ କରୁଥିଲେ, ତା କିନ୍ତୁ ସେତିକି ମଧ୍ୟରେ ଆବଦ୍ଧ ହୋଇ ରହୁନଥିଲା । ତାହାକୁ ସେ କାର୍ଯ୍ୟରେ ହିଁ ପରିଣତ କରୁଥିଲେ । କଥା ଓ କାମ, ବଚନ ଓ ଆଚରଣ ମଧ୍ୟରେ କୌଣସି ସମ୍ପର୍କ ନ ରଖିବା - ଓ ଏପରି କି ଯାହା କୁହାଯାଏ ତା'ର ବିପରୀତ ଆଚରଣ କରିବା - ଯେତେବେଳେ ଏ ସମାଜ ସଂସ୍ଥାର ନେତୃତ୍ୱ ନେଉଥିବା ତଥାକଥିତ ବଡ଼ ବଡ ବ୍ୟକ୍ତିଙ୍କ ପ୍ରଥମ ଓ ପ୍ରଧାନ ଲକ୍ଷଣରେ ପରିଣତ ହୋଇଯାଇଛି ସେତେବେଳେ ସେ ଏହାର ବ୍ୟତିକ୍ରମ ଥିଲେ ଓ ସେପରି ଶଠତାର ଧାର ଧାରୁ ନଥିଲେ ।

୭. ସେ ପ୍ରସଙ୍ଗରେ କହି ରଖିବା ଉଚିତ ଯେ ନିର୍ଭୀକତା ଓ ଦୃଢ଼ତା ତାଙ୍କ ବ୍ୟକ୍ତିତ୍ୱର ଅନ୍ୟତମ ଉଜ୍ଜ୍ୱଳ ଦିଗ ଥିଲା । ପରିସ୍ଥିତିର ଚାପରେ ମୁଣ୍ଡ ନୋଇଁବା,ପରିସ୍ଥିତି ସହ ସାଲିସ କରିବା ଲୋକ ସେ ନଥିଲେ । କର୍ତ୍ତବ୍ୟ ପଥରେ ଅଗ୍ରସର ହେବା ସମୟରେ କେହି ତାଙ୍କର ସହାୟତା କରୁ ବା ନକରୁ, କେହି ତାଙ୍କୁ ସଙ୍ଗ ଦେଉ ବା ନ ଦେଉ, କେହି ତାଙ୍କର ଅନୁଗାମୀ ହେଉ ବା ନ ହେଉ ସେଥିପ୍ରତି ଚିନ୍ତିତ ନ ହୋଇ ସେ ଆଗେଇ ଚାଲୁଥିଲେ । 'ଏକଲା ଚଲୋ' ହିଁ ଥିଲା ତାଙ୍କର ନୀତି ।

୮. ତାଙ୍କର ଜୀବିତାବସ୍ଥାରେ ଏକ ପୁତ୍ରର ବିୟୋଗ ଦୁଃଖ ତାଙ୍କୁ ସହ୍ୟ କରିବା ପାଇଁ ହୋଇଥିଲା । ସେ ସମୟରେ ସେ ଯେପରି ଅବିଚଳିତ ରହିଥିଲେ ତା ଦେଖିଥିବା ଲୋକଙ୍କୁ ଅଭିଭୂତ କରିଥିଲା ବୋଲି ମଧ୍ୟ ଶୁଣିଛି । ତାଙ୍କ ମଧ୍ୟରୁ ଜଣେ କହୁଥିଲେ ବୈରାଗୀ ମିଶ୍ର ସ୍ଥିତଧୀ ।

# ସ୍ୱଭାବ ନିୟତ ଜୀବନଯୁଦ୍ଧ

(ପିଲାଦିନର ଅନୁଭୂତି)

କଟକ ଜିଲ୍ଲା ସାଲେପୁର ଥାନା, ମୂଳବସନ୍ତ ଗ୍ରାମରେ ଗୋଟିଏ ଏକାନ୍ନବର୍ତ୍ତୀ କୁଳୀନ ବ୍ରାହ୍ମଣ ପରିବାରରେ ମୋର ଜନ୍ମ । ଜାତକରୁ ଭାଗ୍ୟଫଳ ବୁଝିବା ନିର୍ବୋଧତା ଓ ଅନିଷ୍ଟପ୍ରଦ ବୁଝି ମୁଁ ଦିନେ ମୋର ୨୫-୨୬ ବର୍ଷ ବେଳେ ଜାତକଟି ଚିରି ଦେଇଥିଲି । ଚିରିଦେବାବେଳେ ଜନ୍ମ ତାରିଖ ଟିପି ରଖିବାକୁ ଭୁଲିଗଲି । ତେଣୁ ମୋର ଜନ୍ମର ପ୍ରକୃତ ତାରିଖଟା ମୋତେ ଜଣା ନାହିଁ । ମୋର କକେଇ ପୁଅ ଭାଇ ମୋ ଠାରୁ ୩-୪ ମାସ ବଡ଼ । ମୁଁ ତାଙ୍କ ଠାରୁ ବୁଝିଲି ଯେ ତାଙ୍କର ଜନ୍ମ ୧୮୮୫ ସାଲ ସେପ୍ଟେମ୍ବର ମାସରେ, ତେଣୁ ମୋର ଜନ୍ମ ସେହି ସାଲ ନଭେମ୍ବର କିମ୍ବା ଡିସେମ୍ବର ମାସରେ ।

''ଏକାନ୍ନବର୍ତ୍ତୀ ପରିବାରରେ ମୋର ଜନ୍ମ'' ଏ କଥା ଲେଖିବାର ଅଭିପ୍ରାୟ ଏହିକି ମୋ ପିଲାବେଳେ ଓଡ଼ିଶାରେ ଏକାନ୍ନବର୍ତ୍ତୀ ପରିବାର ଅନେକ ଥିଲା । ଲୋକେ କିଏ ତିନି ପୁରୁଷ କିଏ ଚାରି ପୁରୁଷ ପର୍ଯ୍ୟନ୍ତ ଏକାନ୍ନବର୍ତ୍ତୀ ହୋଇ ରହୁଥିଲେ । ଅନେକ ପରିବାରରେ ୫୦/୬୦ ଜଣ ଲୋକ ଏକାନ୍ନବର୍ତ୍ତୀ ହୋଇ ସୁଖ ସ୍ୱାଚ୍ଛନ୍ଦରେ ରହିଥିବା ମୁଁ ଦେଖିଛି । ପ୍ରତ୍ୟେକ ପରିବାରରେ ଗାଈ ଗୋରୁ ଯଥେଷ୍ଟ ଥିଲେ । ଲୋକେ ଦୁଧ, ଘିଅ ଯଥେଷ୍ଟ ପରିମାଣରେ ଖାଇବାକୁ ପାଇ ଖୁବ୍ ସୁସ୍ଥ ଓ ସବଳ ଥିଲେ । ଆପଣା ଆପଣା ମଧ୍ୟରେ ସେମାନଙ୍କର ସ୍ନେହ ସଦ୍‌ଭାବ ଓ ସହଯୋଗ ଯଥେଷ୍ଟ ଥିଲା । ଲୋକେ ସତ୍ୟପ୍ରିୟ ଥିଲେ ଏବଂ ସେମାନଙ୍କର ଆଚାର ବ୍ୟବହାର ଖୁବ୍ ସରଳ ଥିଲା । ସ୍ତ୍ରୀଲୋକ ମାନେ ମୋଟା ମୋଟା ରୂପାର ଗହଣା ପିନ୍ଧୁଥିଲେ । ସୁସ୍ଥକାୟ ଥିବାରୁ ସେହି ମୋଟା ଗହଣାରେ ସେମାନେ ବିଶେଷ ଶୋଭା ପାଉଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ଉପସ୍ଥିତ ପାଶ୍ଚାତ୍ୟ ଶିକ୍ଷା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ସଂକୀର୍ଣ୍ଣ ସ୍ୱାର୍ଥପରତା ଓ ବୃଥାଡ଼ମ୍ବର କ୍ରମେ କ୍ରମେ ବୃଦ୍ଧି ପାଇଲା ଏବଂ ଆପଣା ଆପଣା ମଧ୍ୟରେ ଥିବା ସ୍ନେହ ସଦ୍‌ଭାବ ଓ ସହଯୋଗ କ୍ରମେ ଲୋପ ହେବାକୁ ଲାଗିଲା । ଯେଉଁ ଅଳ୍ପ କେତେ ଜଣ ପାଠ ପଢ଼ିଲେ ଏବଂ ଚାକିରି କରିବା ପାଇଁ ସହରକୁ ଆସିଲେ ସେମାନେ ବଙ୍ଗାଳୁଣୀ ମାନଙ୍କୁ ଓ ଅନ୍ୟ ସ୍ତ୍ରୀ ମାନଙ୍କୁ ଅନୁକରଣ କରି ନିଜର ସ୍ତ୍ରୀ ମାନଙ୍କୁ ରୂପା ଗହଣା ପରିବର୍ତ୍ତେ ସୁନା ଗହଣା ପିନ୍ଧାଇଲେ । ଗହଣାରେ ବୃଥାଡ଼ମ୍ବର ଦେଖାଇବା ଓ ଗହଣା ପ୍ରତି ଆସକ୍ତି ଏପରି ବୃଦ୍ଧି ପାଇଲା ଯେ ଲୋକେ ଦୁଧ, ଘିଅ ବିକ୍ରୀକରି ଆବଶ୍ୟକ ହେଲେ ଗାଈ ଗୋରୁ ମଧ୍ୟ ବିକ୍ରୀ କରି ବିକ୍ରୀ-ଲବ୍ଧ ଅର୍ଥରେ ଗହଣା କିଣିଲେ । ଏହି ଗହଣା ସକାଶେ ସ୍ତ୍ରୀଲୋକ ମାନଙ୍କ ମଧ୍ୟରେ ଥିବା ସ୍ନେହ ସଦ୍‌ଭାବ ଲୋପ

ହେଲା ଏବଂ ଈର୍ଷା ଓ ପରଶ୍ରୀକାତରତା ବୃଦ୍ଧି ପାଇଲା । ଏହି ଗହଣା ସକାଶେ ଅନେକ ଏକାନ୍ନବର୍ତ୍ତୀ ପରିବାର ଉଚ୍ଛନ୍ନ ହେଲା ।

ଚାଷ ପ୍ରତି ଲୋକଙ୍କର ଯଥେଷ୍ଟ ଆଗ୍ରହ ଥିଲା । ଆଧୁନିକ ଶିକ୍ଷାର ବିସ୍ତାର ହେବା ସଙ୍ଗେ ସଙ୍ଗେ ଚାଷ ପ୍ରତି ଆଗ୍ରହ ହ୍ରାସ ପାଇବାକୁ ଆରମ୍ଭ କଲା । ଲୋକେ ଜମିବାଡ଼ି ବିକ୍ରୀ କରି ପୁଅମାନଙ୍କୁ ପାଠ ପଢ଼ାଇଲେ । ଯେଉଁମାନେ ପାଠପଢ଼ି ଚାକିରୀ କଲେ ସେମାନେ ଅଳ୍ପ ପରିଶ୍ରମରେ ଅନ୍ୟମାନଙ୍କ ଅପେକ୍ଷା ଅଧିକ ଉପାର୍ଜନ କଲେ ଏବଂ ଉପାର୍ଜିତ ଅର୍ଥକୁ ନିଜର ଭୋଗ ବିଳାସରେ ଓ ବୃଥାଡ଼ମ୍ବର ଦେଖାଇବାରେ ଖର୍ଚ୍ଚ କଲେ । ସେହିମାନଙ୍କୁ ଦେଖି ଯେଉଁ ସବଳ ଓ ସୁସ୍ଥକାୟ ମୂଲିଆମାନେ ଚାଷଆଦି କରୁଥିଲେ ସେମାନେ କଲିକତା ଓ ଖଡ଼ଗପୁର ଯାଇ ଅଧିକ ଟଙ୍କା ଉପାର୍ଜନ କଲେ । ତେଣୁ ଚାଷ କାମ ରହିଲା ନିତାନ୍ତ ବୁଢ଼ା ଓ ଅକର୍ମଣ୍ୟ ଲୋକମାନଙ୍କ ହାତରେ । କ୍ରମେ କ୍ରମେ ଚାଷ ପ୍ରତି ଲୋକଙ୍କର ଆଗ୍ରହ ହ୍ରାସ ପାଇଲା ଏବଂ ଚାକିରୀ ପ୍ରତି ଆଗ୍ରହ ବୃଦ୍ଧି ପାଇଲା । ଗହଣାରେ ଓ ନ୍ୟାୟ ନିମିତ୍ତରେ ବୃଥାଡ଼ମ୍ବର ଦେଖାଇବାର ପ୍ରବୃତ୍ତି ମଧ୍ୟ କ୍ରମେ କ୍ରମେ ବୃଦ୍ଧି ପାଇଲା । ୧୯୨୫-୨୬ ସାଲ ବେଳକୁ ଅନେକ ଏକାନ୍ନବର୍ତ୍ତୀ ପରିବାର ଭାଙ୍ଗିଯାଇ ଶତକଡ଼ା ୨-୩ଟି ମାତ୍ର ଏକାନ୍ନବର୍ତ୍ତୀ ପରିବାର ରହିଲା । ଏହି କେତୋଟି ପରିବାରରେ ମଧ୍ୟ ପୂର୍ବର ସ୍ନେହ ସଦ୍‌ଭାବ ରହିଲା ନାହିଁ । ନାନା ପ୍ରକାର ଦୁଃଖ ଅଶାନ୍ତି ଭୋଗ କରି ମଧ୍ୟ କେବଳ ଲୋକନିନ୍ଦାକୁ ଭୟକରି ଲୋକେ ଏକାନ୍ନବର୍ତ୍ତୀ ପରିବାର ରକ୍ଷା କଲେ । ଯେଉଁ ଲୋକ ପ୍ରଥମେ ପୃଥକ୍ ହେବାକୁ କହିବ ତାହାର ଅମଙ୍ଗଳ ଘଟିବ ଏପରି ଅନ୍ଧବିଶ୍ୱାସ ଓ ଭୟ ମଧ୍ୟ ପ୍ରାୟ ସମସ୍ତଙ୍କର ଥାଏ । ଏକାନ୍ନବର୍ତ୍ତୀ ପରିବାର ରହିବା ମଙ୍ଗଳପ୍ରଦ କି ଅନିଷ୍ଟପ୍ରଦ ଏ ବିଷୟରେ ସ୍କୁଲ କଲେଜମାନଙ୍କରେ ଅନେକ ଆଲୋଚନା ଚାଲିଲା । ଏପରି ଅନେକ ଆଲୋଚନାରେ ମୁଁ ଯୋଗ ଦେଇଛି । ମୁଁ ଥାଏ ଏକାନ୍ନବର୍ତ୍ତୀ ପରିବାର ରହିବା ସପକ୍ଷରେ । ''କୁଳୀନ ବ୍ରାହ୍ମଣ ପରିବାରରେ ମୋର ଜନ୍ମ'' ଏକଥା ଲେଖିବାର ଅଭିପ୍ରାୟ ଏହିକି ମୋ ପିଲାବେଳେ ସମାଜରେ କୁଳୀନ ବ୍ରାହ୍ମଣ ପରିବାର ମାନଙ୍କର ଯଥେଷ୍ଟ ସମ୍ମାନ ଥିଲା । ସମ୍ମୁକର, ବାଜପୋଇ, ଭରଦ୍ୱାଜ ଏକୋଦ୍ଦିଷ୍ଟ ବ୍ରାହ୍ମଣ ଭାବରେ ଆମ ପରିବାରର ମଧ୍ୟ ଯଥେଷ୍ଟ ସମ୍ମାନ ଥିଲା । କୁଳୀନ ବ୍ରାହ୍ମଣ ପରିବାରମାନଙ୍କର ସମ୍ମାନ ତେଣିକି ଥାଉ, ବ୍ରାହ୍ମଣ ଜାତି ପ୍ରତି ଲୋକଙ୍କର ଯେଉଁ ସମ୍ମାନ ଥିଲା ତାହା ଆଜି ସମ୍ପୂର୍ଣ୍ଣ ରୂପେ ଲୋପପାଇ ସାରିଲାଣି । ଆଜିକାଲି ସବୁ ସମ୍ମାନ ରହିଲାଣି ଧନରେ, ବି.ଏ., ଏମ୍.ଏ. ପ୍ରଭୃତି ଉପାଧିରେ ଓ ବଡ଼ ବଡ଼ ଚାକିରୀରେ । ନିଜ ଅପେକ୍ଷା ଉଚ୍ଚକୂଳ ଖୋଜି ଲୋକେ ଝିଅମାନଙ୍କୁ ବିବାହ ଦେଉଥିଲେ ଏବଂ ''ସ୍ତ୍ରୀ ରତ୍ନ ଦୁଷ୍କୁଳାଦପି'' ଏହି ଶାସ୍ତ୍ରୀୟ ବ୍ୟବସ୍ଥା ଅନୁସାରେ ନିଜ ଅପେକ୍ଷା ନ୍ୟୂନ କୂଳରୁ ମଧ୍ୟ କନ୍ୟା ଆଣି ବିବାହ କରୁଥିଲେ । ମୁଁ

ମୋର ବଡ଼ ଝିଅକୁ କର ବଂଶରେ ଅର୍ଥାତ୍ ଆମ ଅପେକ୍ଷା ନ୍ୟୂନ କୂଳରେ ବିବାହ ଦେଇଥିଲି । ମୋର ୪୦ ବର୍ଷ ବେଳେ ମୋର ସ୍ତ୍ରୀଙ୍କର ମୃତ୍ୟୁ ହେବାରୁ ମୋର ମାଆ କହିଲେ "କରବଂଶ ଆମର ଝିଅ ଆଣିବା ବନ୍ଧୁ, ମାତ୍ର ଝିଅ ଦେବା ବନ୍ଧୁ ନୁହଁନ୍ତି । ତୁ କର ବଂଶରେ ଝିଅ ଦେଇଥିବାରୁ ତୋର ସ୍ତ୍ରୀ ମଲା ।" ଏପରି ଅନ୍ଧବିଶ୍ୱାସ ଆଜିକାଲି ନାହିଁ । ଲୋକେ ଧନ ଦେଖି ଓ ଚାକିରୀ ଦେଖି ନିଜ ଅପେକ୍ଷା ନ୍ୟୂନ କୂଳରେ ଝିଅ ଦେଲେଣି । ଉଚ୍ଚକୂଳ ଓ ନୀଚକୂଳ ମଧ୍ୟରେ ଥିବା ଭେଦଭାବ କାହିଁକି, ବ୍ରାହ୍ମଣ ଓ ଅବ୍ରାହ୍ମଣ ମଧ୍ୟରେ ଥିବା ଭେଦଭାବ ମଧ୍ୟ କ୍ରମେ କ୍ରମେ ଲୋପ ହେଉଅଛି । ସମାଜରୁ ଯାବତୀୟ ଭେଦଭାବ ଦୂର ହେବା ଯେ ବାଞ୍ଛନୀୟ ଏଥିରେ ସନ୍ଦେହ ନାହିଁ । ମାତ୍ର ବିବାହ ବିଷୟରେ ପୂର୍ବୋକ୍ତ ରୂପେ ଭେଦଭାବ ରଖିବା ବାଞ୍ଛନୀୟ କି ନୁହେଁ ଏ ବିଷୟରେ ପ୍ରତ୍ୟେକ ବ୍ୟକ୍ତି ସ୍ୱାଧୀନ ଭାବରେ ଚିନ୍ତା କରି ତଦନୁସାରେ କାର୍ଯ୍ୟ କରିବା ଆବଶ୍ୟକ । ବାପାଙ୍କର ଦୁଇ ପୁଅ ମଧ୍ୟରେ ମୁଁ ହେଉଛି ବଡ଼ । ଦଦେଇଙ୍କର ଦୁଇ ପୁଅ । କକେଇ ନିଃସନ୍ତାନ ଥିବାରୁ ଦଦେଇଙ୍କର ସାନ ପୁଅକୁ ସେ ପୋଷ୍ୟପୁତ୍ର କରିଥିଲେ । ଦଦେଇ, କକେଇ ଓ ବାପାଙ୍କୁ ଆମେ ଚାରି ଭାଇ ଯଥାକ୍ରମେ ଦଦେଇ ବାପା, ଦାରିଆ ବାପା ଓ ଲୋଚନା ବାପା ବୋଲି ଡାକୁଥିଲୁ ଏବଂ ଦେଠେଇ, ଖୁଡ଼ୀ ଓ ବୋଉକୁ (ମା)କୁ ଯଥାକ୍ରମେ ଦୁଧି ବୋଉ, ଆଉ ବୋଉ ଓ ପୁନି ବୋଉ ବୋଲି ଡାକୁଥିଲୁ । ଡାକିବାର ପ୍ରଥା ଏପରି ରହିବାର ପ୍ରଧାନ କାରଣ ଏହିକି ପରିବାରସ୍ଥ ପିଲାମାନଙ୍କ ମଧ୍ୟରେ ଦଦେଇ, କକେଇ ଓ ବାପା କିମ୍ବା ଦେଠେଇ, ଖୁଡ଼ୀ ଓ ବୋଉ ଏପରି କୌଣସି ଭେଦଭାବ ନଆସୁ । ତେଣୁ ପିଲାମାନେ ବାପା, ଦଦେଇ ଓ କକେଇ ସମସ୍ତଙ୍କୁ ବାପା ଦୃଷ୍ଟିରେ ଦେଖୁଥିଲେ । କକେଇ ଦାରିଆପୁରରେ ରହି ଶିକ୍ଷକତା କରୁଥିବାରୁ ଆମେ ଚାରି ଭାଇ ତାଙ୍କୁ ଦାରିଆ ବାପା ବୋଲି ଡାକୁଥିଲୁଁ । ମୋ ବାପାଙ୍କର ନାମ ପଦ୍ମଲୋଚନ ମିଶ୍ର । ଦଦେଇ ତାଙ୍କୁ "ଲୋଚନା" ବୋଲି ଡାକୁଥିବାରୁ ଆମେ "ଲୋଚନା ବାପା" ବୋଲି ଡାକୁଥିଲୁ । ମୋ ବଡ଼ ଭଉଣୀର ନାଁ ପୁନି ଥିବାରୁ ମୋ ବୋଉକୁ "ପୁନି ବୋଉ" ବୋଲି ଡାକୁଥିଲୁ । ଦଦେଇ ଜଣେ ସଂସ୍କୃତଜ୍ଞ ପଣ୍ଡିତ ଏବଂ ଆଦର୍ଶ ଗୃହସ୍ଥ ଥିଲେ । ମମତା ଦୋଷ ତାଙ୍କର ଆଦୌ ନଥିଲା କହିଲେ ଚଳେ । ଲୋଭ ଓ କ୍ରୋଧ ତାଙ୍କୁ ସ୍ପର୍ଶ କରିନଥିଲା । ଶିକ୍ଷା ବିଭାଗରେ ଇନସ୍ପେକ୍ଟିଂ ପଣ୍ଡିତ ଥାଇ ମାସିକ ୧୮ଟଙ୍କା ବେତନ ପାଉଥିଲେ । ସେହି ଟଙ୍କାକୁ ସେ ଗୋଟିଏ କାଠ ସିନ୍ଦୁକର କୋଣରେ ଗୋଟିଏ ପଥୁରି ଗିଲାସରେ ରଖନ୍ତି । ବାପା ଘର ଖର୍ଚ୍ଚ ଓ ଚାଷ କାମ ବୁଝନ୍ତି । କକେଇ ଚୈତନ୍ୟ ଧର୍ମ ଗ୍ରହଣ କରି ଚୈତନ୍ୟ ମାଳା ପିନ୍ଧୁଥିଲେ । ସେଥିପାଇଁ ସାମାଜିକ ଭୋଜି ପ୍ରଭୃତିରେ ସେ ଯୋଗ ଦେଇ ପାରୁନଥିଲେ । ସେ ଯାହା ଉପାର୍ଜନ କରୁଥିଲେ ସେଥିରୁ ଅଧିକାଂଶ ଟଙ୍କା ସେ ଗରୀବ ଦୁଃଖୀଙ୍କୁ ସାହାଯ୍ୟ କରିବାରେ ଓ ମେଳା ମଉଚ୍ଛବରେ ଖର୍ଚ୍ଚ କରୁଥିଲେ । ଗଞ୍ଜେଇ ଖାଇଲେ ମନର ଏକାଗ୍ରତା ଆସେ

ଏହି ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ସେ ଗଞ୍ଜେଇ ଖାଉଥିଲେ । ଏହି ତିନି ଭାଇଙ୍କ ପ୍ରକୃତି ସମ୍ପୂର୍ଣ୍ଣ ଭିନ୍ନ ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ମନାନ୍ତର ଓ କଳହ କେବେହେଲେ ହୋଇନାହିଁ । ଏପରି ଏକାନ୍ନବର୍ତ୍ତୀ ପରିବାରରେ ରହି ମୁଁ ପିଲାବେଳେ ଯେଉଁ ସୁଖ ଉପଲବ୍ଧି କରୁଥିଲି ତାହା ଆଜି କୌଣସି ପରିବାରରେ ଦେଖାଯାଉ ନାହିଁ । ସ୍ୱର୍ଗପରି ପରିବାର ସବୁ ଆଜି ନରକରେ ପରିଣତ ହେଲାଣି ଏକଥା ମୁଁ ଅନେକ ଦିନରୁ ଅନୁଭବ କଲିଣି । ଆଜି କୌଣସି ପରିବାରରେ ଆପଣା ଆପଣା ମଧ୍ୟରେ ସ୍ନେହ ସଦ୍‌ଭାବ ନାହିଁ, ତେଣୁ ସୁଖ ଶାନ୍ତି ମଧ୍ୟ ନାହିଁ । କକେଇ ଯାହାଙ୍କୁ ପୋଷ୍ୟ ପୁତ୍ର କରିଥିଲେ ସେ ମୋଠାରୁ ୩-୪ ମାସ ବଡ଼ ଥିବାରୁ ତାଙ୍କର ଓ ମୋର ବ୍ରତ, ବିବାହ ଓ ବୋହୂ ଆସିବା ଏକାଦିନେ ହୋଇଥିଲା । ୧୩-୧୪ ବର୍ଷ ବୟସରେ ଆମ ଦୁହିଁଙ୍କର ବିବାହ ହେଲା । ବିବାହର ଅଳ୍ପ ସମୟ ପରେ ଦଦେଇ ଆମ ଦୁହିଁଙ୍କୁ ଉଚ୍ଚ ବିଦ୍ୟାଳୟରେ ପଢ଼ିବା ପାଇଁ ବାରିପଦା ପଠାଇଲେ । ସେତେବେଳେ ବାରିପଦାକୁ ରେଳଗାଡ଼ି ଯାଇ ନଥିଲା । ବାଲେଶ୍ୱରରୁ ବାରିପଦା ୩୫-୩୬ ମାଇଲ ରାସ୍ତା ବଳଦ ଗାଡ଼ିରେ ଯିବାକୁ ପଡ଼େ । ରାତିରେ ବଳଦ ଗାଡିରେ ଯିବାବେଳେ ଆମକୁ ଡର ମାଡ଼େ । ଏତେ ଦୂରକୁ ପଢ଼ିବାକୁ ପଠାଇବାର କାରଣ ଏହିକି ସେତେବେଳେ ବାରିପଦାରେ ବୋର୍ଡିଂ ଖର୍ଚ୍ଚ ମାସକୁ ଟ.୨ ପଡୁଥିଲା । ସେଠାରେ ମହାରାଜା ରାମଚନ୍ଦ୍ର ଭଞ୍ଜ ବୋର୍ଡିଂର ପୂଝାରି ଓ ଚାକରଙ୍କର ଦରମା ଦେଉଥିଲେ । ବିଦେଶୀ ପିଲାମାନଙ୍କୁ ସ୍କୁଲ ଦରମା ଦେବାକୁ ପଡୁନଥିଲା । ୧୯୦୬ ସାଲରେ ଆମେ ଦୁହେଁ ଏନ୍‌ଟ୍ରାନ୍ସ ପରୀକ୍ଷାରେ (ଆଜିକାଲି ମାଟ୍ରିକ୍) ବୃତ୍ତି ପାଇ କଟକ କଲେଜରେ ପଢ଼ିଲୁ । ବକ୍ସିବଜାରର ରାଧାପ୍ରସାଦ ଭଗତଙ୍କ ଦୁଇ ପୁଅଙ୍କୁ ଟ୍ୟୁସନ କରି ମାସକୁ ୧୫ ଟଙ୍କା ପାଉଁ । ଯେଉଁ ଦଦେଇ ଆମକୁ ପଢ଼ାଉଥିଲେ ୧୯୦୭ ସାଲରେ ତାଙ୍କର ମୃତ୍ୟୁ ଘଟିବାରୁ ଏବଂ ଆମର ଆର୍ଥିକ ଅବସ୍ଥା ଭଲ ନଥିବାରୁ ଆମେ ଦୁହେଁ ଆଉ ପଢ଼ିପାରିଲୁ ନାହିଁ ।

## ଯଥେଚ୍ଛାରିତାର କାରଣ

ବାରିପଦାରେ ପଢୁଥିବାବେଳେ ଆମେ ବୋର୍ଡିଂ ପିଲା ଅନେକ ସମୟରେ ସେଠା ରାଣିବାଗ ନାମକ ବଗିଚାକୁ ବୁଲିବାକୁ ଯାଉଁ । ସେହି ବଗିଚାର ମଝିରେ ମାର୍ବଲ ପଥରରେ ଲେଖାଥାଏ "Thy will be done"- ଏବେ ମଧ୍ୟ ଲେଖାଅଛି । ସେତେବେଳେ ଏହି କଥାଟିର ଅର୍ଥ ମୁଁ ଯାହା ଅନ୍ୟମାନଙ୍କଠାରୁ ବୁଝିଥିଲି ତାହା ସମ୍ପୂର୍ଣ୍ଣ ଭ୍ରାନ୍ତ, ଏକଥା କିଛିଦିନ ପରେ ମୁଁ ବୁଝିପାରିଲି । ଏହି କଥାଟିର ପ୍ରକୃତ ଅର୍ଥ ଏହିକି- ''ହେ ଈଶ୍ୱର ମୁଁ ଯାହା କରୁଛି ତାହା ଯେପରି ତୁମ୍ଭ ଇଚ୍ଛାର ଅନୁକୂଳ ହେଉ ।'' ଏହି କଥାଟିକୁ ଲୋକେ ଅର୍ଥ କରୁଥିଲେ ଓ ଏବେ ମଧ୍ୟ ଅର୍ଥ କରୁଅଛନ୍ତି- ମନୁଷ୍ୟ ଯାହା କରୁଅଛି ତାହା କରିବାହିଁ ଈଶ୍ୱରଙ୍କର ଇଚ୍ଛା । କୌଣସି କାର୍ଯ୍ୟ କରିବାରେ ମନୁଷ୍ୟର

କୌଣସି ଆୟତ୍ତ ନାହିଁ । ଗୀତା ଏକାଦଶ ଅଧ୍ୟାୟ ୩୩ ଶ୍ଳୋକରେ ଥିବା ''ନିମିତ୍ତ ମାତ୍ରଂ ଭବ ସବ୍ୟସାଚିନ୍ !'' ଉକ୍ତିଟିକୁ ଗୀତାର ଭାଷ୍ୟକାରମାନେ ଏହିପରି ଅର୍ଥ କରୁଅଛନ୍ତି । ମହାଭାରତରେ ଥିବା ''ତ୍ୱୟା ହୃଷିକେଶ ! ହୃଦିସ୍ଥିତେନ, ଯଥା ନିଯୁକ୍ତୋଽସ୍ମି ତଥା କରୋମି'' ଏହି ଉକ୍ତିଟିକୁ ମଧ ଲୋକେ ପୂର୍ବୋକ୍ତ ପ୍ରକାର ଅର୍ଥ କରି ନିଜ ନିଜର ଗର୍ହିତ କାର୍ଯ୍ୟକୁ ସମର୍ଥନ କରନ୍ତି । ଅନେକ ତଥାକଥିତ ଧାର୍ମିକ ଲୋକ ଓ ସଂସ୍କୃତଜ୍ଞ ପଣ୍ଡିତ କ୍ରୋଧର ବଶବର୍ତ୍ତୀ ହୋଇ ନିଜର ସ୍ତ୍ରୀଙ୍କୁ ମାଡ଼ ମାରନ୍ତି, ମିଥ୍ୟା ସାକ୍ଷ୍ୟଦେଇ ଅର୍ଥ ଉପାର୍ଜନ କରନ୍ତି ଇତ୍ୟାଦି । ଜଣେ ଶାସ୍ତ୍ରଜ୍ଞ ପଣ୍ଡିତ ହୋଇ ଏବଂ ଧାର୍ମିକ ଲୋକ ହୋଇ ଅର୍ଥାତ୍ ଗେରୁଆ ଲୁଗା ପିନ୍ଧି, ପ୍ରତ୍ୟହ ସନ୍ଧ୍ୟା ତର୍ପଣ ଇତ୍ୟାଦି କରି ଆପଣ ଏପରି ସବୁ କିପରି କରୁଅଛନ୍ତି ବୋଲି ପଚାରିଲେ ସେ ମହାଭାରତରୁ ପୂର୍ବୋକ୍ତ ''ଯଥା ନିଯୁକ୍ତୋଽସ୍ମି ତଥା କରୋମି'' ଏହି ଉକ୍ତିଟି ଉଦ୍ଧାର କରି କହନ୍ତି- ''ଦୟାମୟଙ୍କର ଯାହା ଇଚ୍ଛା ମୋର ସେଥିରେ କୌଣସି ଆୟତ୍ତ ନାହିଁ । ପୂର୍ବୋକ୍ତ "Thy will be done" କଥାଟିର ଏତେ ଆଲୋଚନା କରିବାର କାରଣ ଏହିକି ମୋର ନିଜର ମଧ ଏହି ଦୂରବସ୍ଥା କିଛିଦିନ ପାଇଁ ଘଟିଥିଲା- ଯାହା ପରବର୍ତ୍ତୀ ଆଲୋଚନାରୁ ଜାଣିପାରିବେ । ବର୍ତ୍ତମାନ କେବଳ ନିମ୍ନଲିଖିତ କଥାଟି ବୁଝନ୍ତୁ ।

ମୋର ଏଫ୍.ଏ (ଆଜିକାଲି ଆଇ.ଏ) ପରୀକ୍ଷାରେ ଫେଲ ହେବାର ପ୍ରଧାନ କାରଣ ହେଉଛି ପୂର୍ବୋକ୍ତ ରାଣିବାଗ ବଗିଚାର ମଝିରେ ଲେଖାଥିବା ଏହି "Thy will be done" । କଲେଜରେ ପଢ଼ିବାବେଳେ ମୁଁ ତାସ ଖେଳିବାକୁ ଶିଖିଲି । ତାସ ଖେଳିବାର ମୁଁ ଖୁବ୍ ଆନନ୍ଦ ପାଏ । ଅନେକ ଦିନ ଅନିଦ୍ରା ହୋଇ ଭୋର ହେବାଯାଏ ତାସ ଖେଳିଛି । ତାସ ଖେଳିବାକୁ କେହି ବାରଣ କଲେ ମୁଁ କହେ "Thy will be done" ଅର୍ଥାତ ମୋର ତାସ ଖେଳିବାଟା ଈଶ୍ୱରଙ୍କର ଇଚ୍ଛା । ତାଙ୍କର ଇଚ୍ଛା ବିରୁଦ୍ଧରେ ମନୁଷ୍ୟ କିଛି କରିପାରିବ ନାହିଁ । ତାଙ୍କର ଇଚ୍ଛା ନଥିଲେ ମୁଁ ତାସ ଖେଳନ୍ତି କିପରି ? କଲେଜରେ ପଢ଼ିବାବେଳେ ମୁଁ ଆଉ ଗୋଟିଏ କଥା ଜାଣିଥିଲି । ସେହି କଥାଟି ହେଉଛି "Failure is the pillar of success" ଅର୍ଥାତ ଫେଲ ହେବା ହିଁ କୃତକାର୍ଯ୍ୟ ହେବାର ସ୍ତମ୍ଭ ସ୍ୱରୂପ । ମୁଁ ଯେତେବେଳେ ଏଫ୍.ଏ ଫେଲ୍ ହେବାର ସମ୍ବାଦ ଶୁଣିଲି ଏହି ଦୁଇଟି କଥା ମୋ ମନରେ ସାନ୍ତ୍ୱନା ଆଣିଲା । ଫେଲ୍ ହେବାଟା ଈଶ୍ୱରଙ୍କର ଇଚ୍ଛା ଏବଂ କୃତକାର୍ଯ୍ୟ ହେବାର ସ୍ତମ୍ଭ ସ୍ୱରୂପ କିପରି ତାହା ଅତିଶୀଘ୍ର ସ୍ଥିର କରିନେଲି । ମୁଁ ପୂର୍ବରୁ ଦେଖିଥିଲି ଓ ଅନୁଭବ କରିଥିଲି ଯେ ବଡ଼ ବଡ଼ ଉପାଧିପାଇ ଯେଉଁମାନେ ବେଶୀ ଦରମାରେ ବଡ଼ ବଡ଼ ଚାକିରି କରୁଅଛନ୍ତି ସେମାନେ ଅନ୍ୟମାନଙ୍କ ଅପେକ୍ଷା ଅଧିକ ସ୍ୱାର୍ଥପର ହେଉଅଛନ୍ତି, ଅଧିକ ପରିମାଣରେ ନିଜର ବଡ଼ପଣିଆ ଦେଖାଇ ଦରିଦ୍ର ଅଶିକ୍ଷିତ ପ୍ରତିବେଶୀମାନଙ୍କୁ ଘୃଣା ଚକ୍ଷୁରେ ଦେଖୁଅଛନ୍ତି । ନିଜର ସ୍ତ୍ରୀମାନଙ୍କୁ ରୂପା

ଗହଣା ବଦଳରେ ସୁନା ଗହଣା ପିନ୍ଧାଇବାରେ ଏବଂ ନ୍ୟାୟ ନିମିତ୍ତରେ ନିଜର ବଡ଼ପଣିଆ ଦେଖାଇବାରେ ନିଜକୁ ଧନ୍ୟ ମନେ କରୁଅଛନ୍ତି। ଏମାନଙ୍କ ଆଦର୍ଶରେ ସମାଜର କୌଣସି ଉପକାର ନହୋଇ ବରଂ ଅପକାର ହେଉଅଛି। ମୁଁ ସ୍ଥିର କରିନେଲି ଯେ ବି.ଏ, ଏମ୍.ଏ ପାସକରି ବେଶି ଟଙ୍କା ଦରମା ପାଇଲେ ମୋର ମଧ ଏହି ଅବସ୍ଥା ଘଟିବ ଏବଂ ମୋ ଆଦର୍ଶରେ ସମାଜର ଅମଙ୍ଗଳ ଘଟିବ।

ଆମ ପରିବାରର ଆର୍ଥିକ ଅବସ୍ଥା ଭଲ ନଥିଲେ ମଧ ଚାକିରୀ କରିବାକୁ ମୋର ଆଦୌ ଇଚ୍ଛା ନଥିଲା। ପୂର୍ବୋକ୍ତ କକେଇ ପୁଅ ଭାଇଙ୍କର ସାଂସାରିକ ବୁଦ୍ଧି ମୋ ଅପେକ୍ଷା ଖୁବ୍ ଅଧିକ ଥିଲା। ସଂସାର ପ୍ରତି ମୋର ଉଦାସୀନତା ଓ ବିପରିତ ମନୋବୃତ୍ତି ଲକ୍ଷ୍ୟ କରି ସେ ସର୍ବଦା ମୋର ମୁରବି ପରି ରହିଥାନ୍ତି। କଟକ କଲେକ୍ଟର କଚେରୀରେ ପ୍ରୋବେସନର ହେବା ପାଇଁ ଦରଖାସ୍ତ କରିବାକୁ ସେ ମୋତେ କହିଲେ। ମୁଁ ବାଧ ହୋଇ ଦରଖାସ୍ତ ଦେଲି ଏବଂ ପ୍ରୋବେସନର ନିଯୁକ୍ତ ହେଲି। ସେତେବେଳେ ପ୍ରୋବେସନରମାନଙ୍କୁ ମାସକୁ ଟ୧୦ଙ୍କା ମିଳୁଥିଲା। ସେହି ୧୦ଟଙ୍କା ବେତନରେ ମୋତେ ଯାଜପୁର ସବ୍‌ଡିଭିଜନ ଅଫିସରେ କାମ କରିବାକୁ ଆଦେଶ ହେଲା। ମୋର ଇଚ୍ଛା ବିରୁଦ୍ଧରେ କେବଳ କକେଇ ପୁଅ ଭାଇଙ୍କ କଥା ମାନି ମୁଁ ଯାଜପୁର ଗଲି। କଚେରୀରେ ଉପସ୍ଥିତ ହେବାର ସମୟ ହେଉଛି ୧୦$^{୧/୨}$ ଘଣ୍ଟା। ମୁଁ ପ୍ରାୟ ସବୁଦିନେ କେବେ ୧୨ ଘଣ୍ଟା କେବେ ୧୨$^{୧/୨}$ ଘଣ୍ଟାରେ କଚେରୀରେ ପହଞ୍ଚେ। ମୋର ମନଥାଏ ଯେ ମୋତେ କାମରୁ ବାହାର କରିଦେଲେ ଭଲ ହେବ। ମୁଁ ନିଜେ ଚାକିରି ଛାଡିଦେଲେ ସମସ୍ତେ ମୋ ଠାରେ ଦୋଷାରୋପ କରିବେ। ଆଉ ମଧ ପୂର୍ବୋକ୍ତ "Thy will be done" କଥାଟି ମୋର ସର୍ବଦା ମନେଥାଏ। କାମ କରିବାରେ ମୋର ଅବହେଳା ଦେଖି ସେଠା ସିରସ୍ତାଦାର ଅନେକ ସମୟରେ ମୋ ଉପରେ ବିରକ୍ତ ହୁଅନ୍ତି ଏବଂ ବେଳେବେଳେ କଦର୍ଯ୍ୟ ଭାଷାରେ ଗାଳି ଦିଅନ୍ତି। ଗାଳିଦେଲେ ମୁଁ କହେ ''ଆପଣ ମୋତେ କାମରୁ ବାହାର କରି ଦିଅନ୍ତୁ, ମୋର ଆପତ୍ତି ନାହିଁ, ମାତ୍ର ଏପରି ଗାଳିଦେବା ଉଚିତ ନୁହେଁ।'' ଏପରି ଉତ୍ତର ଶୁଣି ସେ ନୀରବ ରହନ୍ତି। ମୁଁ ସେଠାରେ ଦଶଆଇନ ସିରସ୍ତାରେ କାମ କଲାବେଳେ ଅନେକ କାମ ବାକି ଥିବାରୁ ଡିପୋଟି ଆଦେଶ ଦେଲେ ଯେ କେହି ସେ ବର୍ଷ ପୂଜା ଛୁଟିରେ ଘରକୁ ନଯାଇ ବାକିଥିବା କାମସବୁ ଶେଷ କରିବେ। ଆମ ଘର ସେଠାରୁ ୨୨/୨୪ ମାଇଲ। ମୁଁ ପୂର୍ବରୁ ଘରୁ ଗାଡ଼ି ମଗାଇଥାଏ। ମୋର ଭାରି ଇଚ୍ଛାଥାଏ ଘରକୁ ଆସିବା ପାଇଁ। ସିରସ୍ତାଦାରଙ୍କ ଘରକୁ ଯାଇ ମୁଁ ଘରକୁ ଆସିବା ପାଇଁ ଅନୁମତି ମାଗିଲି। ସେ ବିରକ୍ତ ହୋଇ କହିଲେ ''ତୁମେ ଘରକୁ ଯାଅ, ମାତ୍ର ଏଥର ଘରୁ ଫେରିଲେ ମୁଁ ତୁମ୍ଭଙ୍କୁ ଡିସ୍‌ମିସ୍ କରିଦେବି।'' ଏତିକି ଶୁଣି ମୁଁ ଘରକୁ ଆସିଲି। ଛୁଟି ପରେ ହାଜର ହେବା ମାତ୍ରେ ଡିପୋଟି ମୋତେ

କୈଫିୟତ ମାଗିଲେ । ମୁଁ କୈଫିୟତରେ ଲେଖିଦେଲି ''ସିରସ୍ତାଦାରଙ୍କର ଅନୁମତି ନେଇ ମୁଁ ଘରକୁ ଯାଇଥିଲି । ତୁମେ ଘରକୁ ଯାଅ ବୋଲି ସେ ମୋତେ କହିଲେ ।'' ସେଥର ଡିପୋଟି ମୋତେ ଡିସ୍‌ମିସ୍ କଲେ ନାହିଁ ।

ମୋ ସାଙ୍ଗ ସେଠାରେ ଆଉ ଦୁଇଜଣ ପ୍ରୋବେସନର କାମ କରୁଥାନ୍ତି । ସେମାନେ ବର୍ଷରେ ୮-୯ ମାସ ଠିକା କାମ ପାଆନ୍ତି- କେବେ ମାସିକ ୨୫ ଟଙ୍କା କେବେ ୩୦ ଟଙ୍କା । ସିରସ୍ତାଦାର ମୋତେ ଠିକା କାମ ଦିଅନ୍ତି ନାହିଁ । ମୁଁ ସେହି ୧୦ଟଙ୍କା ପାଇ ସେଠାରେ ଚାରିବର୍ଷ ରହିଲି । ସବୁବେଳେ ମନ ଥାଏ କଟକ କଚେରୀକୁ ଆସିବାକୁ । ୧୯୧୨ ସାଲରେ ସେଠାରେ ଅଫିସ ଇନ୍ସପେକ୍ସନ କରିବାକୁ କଲେକ୍ଟର ଇଯଟନ୍ ସାହେବ ଆସିଲେ । ସେ ଆସିବାର ପୂର୍ବଦିନ ମୁଁ ଖଣ୍ଡେ ଦରଖାସ୍ତ ଲେଖି ସିରସ୍ତାଦାରଙ୍କୁ ଦେଲି । ଦରଖାସ୍ତରେ ଲେଖିଲି- ''ମୁଁ ଏଠାରେ ୧୦ ଟଙ୍କା ପାଇ ଚାରିବର୍ଷ ରହିଲିଣି । ମୋ ଘର କଟକ ସବଡିଭିଜନରେ । ମୋତେ କଟକକୁ ନିଆଯାଉ ।'' ଦରଖାସ୍ତଟି ପଢ଼ିବା ମାତ୍ରେ ସିରସ୍ତାଦାର କହିଲେ ''ମୁଁ ତୁମ୍ଭର ଦରଖାସ୍ତରେ କିଛି ଲେଖିବି ନାହିଁ- ତୁମ୍ଭର ଦରଖାସ୍ତ ଫେରାଇ ନିଅ ।'' ମୁଁ କହିଲି ଆପଣ ମୋ ସପକ୍ଷରେ କିମ୍ବା ମୋର କଟକ ବଦଳି ହେବା ପାଇଁ ଲେଖି ନପାରନ୍ତି ମାତ୍ର ସାହେବଙ୍କ ପାଖକୁ ଫରଓ୍ୱାର୍ଡ କରି ଦିଅନ୍ତୁ । ସେ କହିଲେ "Forwarded, So many letters ! If I touch your paper I must write something against you" ଏହାର ଅର୍ଥ ଏହିକି ''ଫରଓ୍ୱାଡେଡ ତ ଏତେଗୁଡିଏ ଅକ୍ଷର, ମୁଁ ତୁମ୍ଭର କାଗଜ ଛୁଇଁଲେ ତୁମ୍ଭ ବିରୁଦ୍ଧରେ ନିଶ୍ଚୟ କିଛି ଲେଖିବି'' । ମୁଁ ଦରଖାସ୍ତଟି ମନ କଷ୍ଟରେ ଫେରାଇ ଆଣିଲି । ତହିଁ ପରଦିନ ସାହେବ ଇନ୍ସପେକ୍ସନ କଲେ । ମନଟା ଖରାପ ଥିବାରୁ ସେଦିନ ସକାଳୁ ମୁଁ ବୁଲି ଚାଲିଗଲି ଏବଂ ପୂର୍ବପରି ୧୨ଟା ପରେ କଚେରୀକୁ ଆସିଲି । ମୋ ଆସିବା ପୂର୍ବରୁ ସାହେବ ମୋ ସିରସ୍ତାର କାମ ଇନସ୍ପେକ୍ସନ କରି ମୋତେ ଖୋଜିଲେଣି । ମୋର ଅନୁପସ୍ଥିତି ପାଇଁ ସିରସ୍ତାଦାର ମୋ ଉପରେ ମନେ ମନେ ବିରକ୍ତ ହେଲେଣି । ଏହି ସମୟରେ ଭଗବାନ ବାବୁ ନାମକ ଜଣେ ପ୍ରେସ୍କାର ମୋତେ ଦେଖିଲେ ଯେ ମୁଁ ଛତା ଖଣ୍ଡିଏ ଧରି କଚେରୀକୁ ଆସୁଛି । ସେ ମୋ ପାଖକୁ ଦୌଡିଯାଇ ମୋତେ ଟାଣି ଆଣିଲେ ଏବଂ ମୋ ଛତା ଖଣ୍ଡିକ କଚେରୀ ଘର ଭିତରକୁ ପକେଇ ଦେଇ ମୋତେ ସାହେବଙ୍କ ନିକଟକୁ ନେଇଗଲେ । ଖରାରେ ଆସିଥିବାରୁ ଓ ଭଗବାନ ବାବୁଙ୍କ ଟଣାଟଣିରେ ମୋଠାରୁ ଖୁବ୍ ଝାଳ ବୋହୁଥାଏ । ମୋଠାରୁ ଏପରି ଝାଳ ବୋହୁଥିବା ଦେଖି ସାହେବ କହିଲେ ''ଏହି ପ୍ରୋବେସନର ଖୁବ୍ ପରିଶ୍ରମି ଓ ବୁଦ୍ଧିମାନ ପରି ମନେ ହେଉଛି; ଅନ୍ୟ ଦୁଇଜଣ ପ୍ରୋବେସନରଙ୍କ ଅପେକ୍ଷା ଏ ଲୋକର ଯୋଗ୍ୟତା ମଧ୍ୟ ଅଧିକ । ସେମାନେ ବର୍ଷରେ ୮-୯ ମାସ ଠିକା କାମ ପାଉଛନ୍ତି । ଏ ଲୋକକୁ ଆଦୌ ଠିକା କାମ ଦିଆଯାଉ ନାହିଁ କାହିଁକି ?'' ସିରସ୍ତାଦାର କୌଣସି

ଉତ୍ତର ନହେଉଣୁ ମୁଁ କହିଲି- ''ସାର, ମୋ ଘର କଟକ ସବ୍‌ଡିଭିଜନରେ । ମୁଁ ଏଠାରେ ଚାରିବର୍ଷ କାଳ ମାସିକ ୧୦ ଟଙ୍କା ମାତ୍ର ପାଇ ବିଶେଷ କଷ୍ଟରେ ରହିଛି ।'' ସାହେବ ମୋଠାରୁ ଶୁଣିବା ମାତ୍ରେ ସିରସ୍ତାଦାରଙ୍କୁ କହିଲେ ''କଟକରେ ଗିରିଧାରୀ ବାବୁ ଛୁଟି ପାଇଁ ଦରଖାସ୍ତ କରିଅଛନ୍ତି; ଏ ଲୋକକୁ ତାଙ୍କ ଜାଗାରେ କଟକ ନିଆଯାଉ । ସିରସ୍ତାଦାର କହିଲେ ''ଏ ଲୋକ ତାଙ୍କ ଜାଗାରେ କାମ କରିପାରିବ ନାହିଁ ।'' ମୁଁ କହିଲି- ''ସାର, ମୁଁ ସେଠାରେ ନିଶ୍ଚୟ କାମ କରିପାରିବି ।'' ସାହେବ ସିରସ୍ତାଦାରଙ୍କର ମତକୁ ଅପେକ୍ଷା ନକରି ଇନ୍‌ସ୍ପେକ୍ସନ ନୋଟରେ ଗିରିଧାରୀ ବାବୁଙ୍କ ଜାଗାରେ ମୋର ବଦଳି ହେବା ଆଦେଶ ଲେଖିଦେଲେ । ଗିରିଧାରୀ ବାବୁଙ୍କର ବେତନ ଥାଏ ୪୫ ଟଙ୍କା । ସବୁ କିରାଣୀ କହିଲେ- ''ବୈରାଗୀବାବୁ, ତୁମ୍ଭର ଭାଗ୍ୟ ଖୁବ୍ ଭଲ ।'' ମୁଁ ମଧ୍ୟ ମନେ ମନେ ଭାରି ଖୁସି ହେଲି । ମାତ୍ର ସେତେବେଳେ କଟକ କଚେରୀରେ ସିରସ୍ତାଦାର ଥାନ୍ତି ଆଉ ଜଣେ ଗିରିଧାରୀ ବାବୁ । ସେ ଜଣେ ଖାଣ୍ଟି ଲୋକ, ସର୍ବଦା ନିୟମମାନି କାମ କରନ୍ତି । ସେ ଦେଖିଲେ ସାହେବଙ୍କର ଏପରି ଆଦେଶ ନିୟମର ବହିର୍ଭୂତ । କାରଣ ଯେଉଁ ଲୋକ ୪୦ ଟଙ୍କା ପାଉଥିବ ସେ ଲୋକକୁ ୪୫ ଟଙ୍କା କାମ ଦେବାର ନିୟମ । ସାହେବଙ୍କର ଆଦେଶ ସେ ମାନିଲେ ନାହିଁ । ମୋର କଟକ ଆସିବା ବନ୍ଦ ହେଲା । ୩-୪ ମାସ ପରେ ମୁଁ ସାହେବଙ୍କୁ ମୋର ଯାଜପୁରଠାରେ କଷ୍ଟରେ ରହିଥିବା କଥା ସ୍ମରଣ କରାଇ ଦେଇ ଦରଖାସ୍ତ କରିବାରୁ ସାହେବ ମୋତେ ୨୫ ଟଙ୍କା ଠିକା କାମରେ କଟକ ଅଣାଇଲେ ।

ଯାଜପୁରରେ କାମ କଲାବେଳେ ମୁଁ ସେଠାରେ ସମସ୍ତଙ୍କୁ ମୂର୍ତ୍ତିପୂଜା ବିରୁଦ୍ଧରେ କହେଁ । ମୋତେ ଅନେକ ଲୋକ ଅନେକ ବୁଝାଇଲେ ମଧ୍ୟ ମୋର ମନ ମାନେ ନାହିଁ । ମୋର ମାମୁଁ ଗୋବିନ୍ଦ ଚନ୍ଦ୍ର କର ସେଠା ସବ୍‌ରେଜିଷ୍ଟ୍ରାର ଅଫିସରେ ହେଡ୍‌କ୍ଲର୍କ କାମ କରୁଥାନ୍ତି । ମୁଁ ତାଙ୍କ ବସାରେ ଥାଏ । ସେ ପ୍ରତ୍ୟହ ଶିବ ମନ୍ଦିରକୁ ଯାଇ ଶିବଙ୍କୁ ଚନ୍ଦନ ଓ ବେଲପତ୍ର ଇତ୍ୟାଦି ଦିଅନ୍ତି । ଶିବଙ୍କର ଚାରିପାଖ ଧୋଇ ସଫା କରନ୍ତି । ସେ ମୋତେ କହିଲେ- ''ତୁ ମୋ ସଙ୍ଗେ ଶିବ ମନ୍ଦିରକୁ ଯାଇ ଶିବଙ୍କ ଚାରିପାଖ ଧୋଇ ସଫା କରିବୁ ଏବଂ ଶିବଙ୍କ ମୁଣ୍ଡରେ ଚନ୍ଦନ ଓ ବେଲପତ୍ର ଦେବୁ । ତାପରେ ଦେଖିବୁ ଶିବଙ୍କ ପ୍ରତି ତୋର ଭକ୍ତି ଆସିବ ।'' ମୁଁ ତାଙ୍କ କଥା ମାନି ପ୍ରାୟ ଏକମାସ ସେହିପରି କଲି । ମାତ୍ର ମୋର ଭକ୍ତି ଆସିଲା ନାହିଁ ।

ସେଠାରେ କଚେରୀରେ ଆତ୍ମାରାମ ଅଗ୍ନିହୋତ୍ରୀ ନାମକ ଜଣେ ବ୍ରାହ୍ମଣ କିରାଣୀ କାମ କରୁଥିଲେ । ତାଙ୍କ ଘର ସେଠାରେ ବିରଜା ଠାକୁରାଣୀଙ୍କ ନିକଟରେ । ସେହି ଠାକୁରାଣୀଙ୍କୁ ଦୁର୍ଗାଷ୍ଟମୀ ଦିନ ମଦ ଭୋଗ ଦିଆଯାଏ ଏବଂ ବ୍ରାହ୍ମଣମାନେ ପ୍ରସାଦ ସେବା କରନ୍ତି । ତେଣୁ ସେଠାରେ ବ୍ରାହ୍ମଣମାନେ ମଦ ଖାଇଲେ ସମାଜରେ କେହି

ତାଙ୍କୁ ବାଧା ଦିଅନ୍ତି ନାହିଁ । ଅଗ୍ନିହୋତ୍ରୀ ମହାଶୟ ପ୍ରକାଶ୍ୟରେ ମଦ ଖାଆନ୍ତି ସେ ମହାଶୟ ଦିନେ ମୋତେ କହିଲେ- ''ସଂସାରରେ ଯଦି କିଛି ସୁଖପ୍ରଦ ପଦାର୍ଥ ଅଛି, ତାହା ହେଉଛି ମଦ୍ୟ ତୁମେ ଥରେ ପରୀକ୍ଷା କଲେ ଜାଣିପାରିବ । ସତକୁ ସତ ମୁଁ ମୋର ଅନ୍ୟ ଦୁଇଜଣ ବନ୍ଧୁଙ୍କ ସଙ୍ଗେ ମଦ ଖାଇଲି । ମନରେ ଆନନ୍ଦ ଆସିଲା ସେଠାରେ ଆଉ କେତେଥର ମଦ ଖାଇଲି । ଅଳ୍ପଦିନ ପରେ ମୋର କଟକ ବଦଳି ହେଲା । କଟକ କଲେଜରେ ପଢୁଥିଲା ବେଳେ ଯେଉଁ ରାଧାପ୍ରସାଦ ଭଗତଙ୍କ ଘରେ ରହି ଆମେ ଦୁଇଭାଇ ତାଙ୍କର ଦୁଇ ପୁଅଙ୍କୁ ପଢ଼ାଉଥିଲୁ ସେ ମହାଶୟ ମୋତେ ତାଙ୍କ ଘରେ ରଖାଇଲେ । କଟକରେ ସେ ଜଣେ ପ୍ରଧାନ ଧନୀ ଲୋକ ଥିଲେ । ସେ ପ୍ରାୟ ସର୍ବଦା ଭୋଗ ବିଳାସରେ ରହିଥାଆନ୍ତି । ମୁଁ ମଧ୍ୟ ତାଙ୍କ ସାଙ୍ଗରେ ଭୋଗ ବିଳାସରେ ମାତିଗଲି । ମୁଁ ଯାହା କରୁଥାଏ ପୂର୍ବୋକ୍ତ "Thy will be done" କଥାଟିର ପ୍ରେରଣାରେ ପ୍ରକାଶ୍ୟରେ କରୁଥାଏ । ମୋ ବସାକୁ ଲାଗି ଗୋଟିଏ ମୁସଲମାନ ପରିବାର ଥାଏ । ମୁଁ ଅଧିକାଂଶ ଦିନ ସେଠାରେ ପ୍ରକାଶ୍ୟରେ ଖାଏଁ । ଯୌବନର ଆରମ୍ଭରେ ମୋର ଏହିସବୁ କାର୍ଯ୍ୟକଳାପ ଦେଖି ମୋର ଭାଇମାନେ ଓ ଅନ୍ୟମାନେ ମୋତେ ଏପରି ଆଚରଣରୁ ନିବୃତ୍ତ ହେବାକୁ କହିଲେ ମୁଁ କହେଁ "Thy will be done" ଅର୍ଥାତ୍ ଏହା ଈଶ୍ୱରଙ୍କର ଇଚ୍ଛା । ତାଙ୍କର ଇଚ୍ଛା ବିରୁଦ୍ଧରେ ମୁଁ କୌଣସି କାର୍ଯ୍ୟ କରି ପାରିବି କି ?'' ଏପରି ଉତ୍ତର ଶୁଣି ସେମାନେ କୌଣସି ସନ୍ତୋଷଜନକ ଯୁକ୍ତି କରିପାରନ୍ତି ନାହିଁ । ଏହିପରି ଭାବରେ ମୁଁ ପ୍ରାୟ ଦୁଇବର୍ଷ ରହିଲି ।

## ପ୍ରଥମ ପରିବର୍ତ୍ତନ

କଟକ କଲେଜର ଦର୍ଶନ ବିଭାଗର ପ୍ରଫେସର ଜୀବନତାରା ସରକାର ଦିନେ ବାଲୁବଜାର ସଙ୍ଗୀତ ମଠରେ ବକ୍ତୃତା ଦେଉଥିଲେ । ବକ୍ତୃତାର ବିଷୟ ଥିଲା ''ବିବେକ ବୁଦ୍ଧି'' । ବାରିପଦାରେ ସେ ଓ ମୁଁ ୨-୩ ବର୍ଷ ଏକାଶ୍ରେଣୀରେ ପଢୁଥିଲୁ । ମୁଁ ସେଦିନ ତାଙ୍କ ବକ୍ତୃତା ଶୁଣି ବୁଝିପାରିଲି ଯେ ଇଚ୍ଛା ପ୍ରଣୋଦିତ ହୋଇ ମୁଁ ଯାହାସବୁ କରୁଥିଲି ତାହା ଈଶ୍ୱରଙ୍କ ପ୍ରଦତ୍ତ ବିବେକ ବୁଦ୍ଧିର ବିରୁଦ୍ଧରେ ଥିବାରୁ ଈଶ୍ୱରଙ୍କର ଇଚ୍ଛା ବିରୁଦ୍ଧ ଅଟେ । ପରଦିନ ସକାଳୁ ଉଠି ମୁଁ ସେହି ଜୀବନ ବାବୁଙ୍କ ଘରକୁ ଗଲି । ସେ ମୋଠାରୁ ସବୁ ଘଟଣା ଶୁଣିଲେ ଏବଂ ମୋତେ ଏପରି ଭାବରେ ବୁଝାଇଦେଲେ ଯେ ଇଚ୍ଛା ପ୍ରଣୋଦିତ ହୋଇ ମୁଁ ଯାହାସବୁ କରୁଥିଲି ତାହା ଛାଡ଼ିଦେବାକୁ ସେହିଦିନ ପ୍ରତିଜ୍ଞା ବଦ୍ଧ ହେଲି । ସେହିଦିନ ମୁଁ ବୁଝିପାରିଲି ଯେ ଲୋକେ ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ହୋଇ ଏବଂ ବିବେକ ବୁଦ୍ଧିର ପରିଚୟ ନପାଇ ବିପଥଗାମୀ ହେଉଅଛନ୍ତି । ମୁଁ ପିଣ୍ଡାରେ ବସିଥିବାବେଳେ କେହି ସେ ବାଟ ଦେଇ ଯାଉଥିଲେ ମୁଁ ତାଙ୍କୁ ଡାକି ମୋ ପାଖରେ ବସାଏଁ ଏବଂ କହେ- ''ମୁଁ ଗୋଟିଏ ଅସଲ ଜିନିଷ ପାଇଛି, ଯାହା ଲୋକେ କେହି

ପାଇନାହାନ୍ତି । ସେହି ଜିନିଷଟି ହେଉଛି ପ୍ରତ୍ୟେକ ଲୋକର ପବିତ୍ର ବିବେକବୁଦ୍ଧି ।''
ପୂର୍ବୋକ୍ତ ରାଧାପ୍ରସାଦ ଭଗତ ଓ ମୋର ଅନ୍ୟ ସଙ୍ଗୀମାନେ ମୋତେ ପୂର୍ବପରି ସେମାନଙ୍କୁ ସଙ୍ଗୀ ରଖିବାକୁ ଅନେକ ଚେଷ୍ଟା କଲେ । ମାତ୍ର ମୁଁ ଆଉ ବଦଳିଲି ନାହିଁ । ସେହି ଦିନଠାରୁ ଈଶ୍ୱରଙ୍କ ସମ୍ପର୍କରେ କୌଣସି ବିଷୟ ମୋତେ ସ୍ପର୍ଶ କଲାନାହିଁ । ତା'ପରେ ମୁଁ ମୋର କର୍ତ୍ତବ୍ୟ ସ୍ଥିର କରିବାକୁ ଲାଗିଲି । ପ୍ରାୟ ସର୍ବଦା ଗୋଟିଏ ଛୋଟ କୋଠରୀରେ ବସି ଲୋକେ କିପରି ନିଜ ନିଜର ପବିତ୍ର ବିବେକ ବୁଦ୍ଧିର ପରିଚୟ ପାଇବେ ଏବଂ ଯାବତୀୟ ଅନ୍ଧ ବିଶ୍ୱାସ ପରିତ୍ୟାଗ କରି ବିବେକାନୁମୋଦିତ କାର୍ଯ୍ୟ କରିବେ ଏହିସବୁ ବିଷୟରେ ଅନେକ ଭାବିଲି । ମୋର ସେହି କୋଠରୀକୁ ଯିବାକୁ କାହାରିକୁ ଦେଲିନାହିଁ । ମୋର ଏହି ପରିବର୍ତ୍ତିତ ମନୋଭାବ ଓ କାର୍ଯ୍ୟକଳାପ ଦେଖି ମୁଁ ପାଗଳ ହେଲି ବୋଲି କେତେ ଲୋକ ମନେ କଲେ । ମୁଁ ଅନେକ ଥର ସ୍ୱପ୍ନ ଦେଖିଲି ଯେ ମୁଁ ନିର୍ଭୀକ ଭାବରେ ଆକାଶରେ ଉଡୁଛି । ଲୋକେ ତଳେ ତଳେ ମୋ ପଛରେ ଗୋଡେଇ ମୋତେ ଆମନ୍ତ୍ରଣ କରିବାକୁ ଚେଷ୍ଟା କରୁଅଛନ୍ତି । ମାତ୍ର କେହି ମୋର କୌଣସି କ୍ଷତି କରି ପାରୁନାହାନ୍ତି । ଲୋକେ କିପରି ବିବେକ ବୁଦ୍ଧିର ପରିଚୟ ପାଇବେ ଓ ସୁଖରେ ରହିବେ ଏହି ଅଭିପ୍ରାୟରେ ମୁଁ "ସୁଖାନ୍ୱେଷଣ" ନାମକ ଖଣ୍ଡିଏ ବହି ଲେଖିଲି। ମନର ଭାବ ପ୍ରକାଶ କରି କୌଣସି ବିଷୟ ଲେଖିବାକୁ ମୁଁ ସେତେବେଳେ ଜାଣି ନଥିଲି । ସେହି ବହିରୁ ଦୁଇ ତିନୋଟି କଥା ତଳେ ଉଦ୍ଧାର କଲି । ମୋ ମନରେ ସେତେବେଳେ ଯେଉଁସବୁ ବିଷୟ ଉଦୟ ହୋଇଥିଲା ତାହା ଏହି କେତୋଟି ଉକ୍ତିରୁ ଅନୁମାନ କରିପାରିବେ ।

୧- ମନୁଷ୍ୟଧର୍ମ ପାଳନ କରିବା ଏବଂ ବିବେକାନୁମୋଦିତ କାର୍ଯ୍ୟ କରିବା ଏ ଦୁହେଁ ଏକ କଥା । ବିବେକ ବୁଦ୍ଧିର ପରିଚୟ ପାଇ ନଥିବାରୁ ଲୋକେ ଚିରାଚରିତ ପ୍ରଥାସବୁର ଅନ୍ଧାନୁସରଣକୁ କର୍ତ୍ତବ୍ୟ ମନେ କରି ଅଛନ୍ତି । ଲୋକ ନିନ୍ଦାକୁ ଭୟ କରି ଏବଂ ଲୋକଙ୍କ ଠାରୁ ପ୍ରଶଂସା ପାଇବାକୁ ଲାଳାୟିତ ହୋଇ ଲୋକେ ଯାହାସବୁ କରୁଅଛନ୍ତି ତାହା ପ୍ରକୃତରେ ସେମାନଙ୍କର କର୍ତ୍ତବ୍ୟ ନୁହେଁ ।

୨- ଯେଉଁ ଲୋକର ବିବେକ ବୁଦ୍ଧି ନାହିଁ ବା ମନୁଷ୍ୟଧର୍ମ ବା ମନୁଷ୍ୟତା ନାହିଁ ସେ ଲୋକ ବ୍ରାହ୍ମଣ କିମ୍ବା ମୁସଲମାନ କିମ୍ବା ବ୍ରାହ୍ମଣ ହୋଇନପାରେ । କାରଣ ତାହା ଯଦି ସମ୍ଭବ ତେବେ ଗୋଟିଏ ମାଙ୍କଡ଼କୁ ଧରି ତାକୁ ଚିତା ଓ ପଇତା ପିନ୍ଧାଇ ଦେଇ ସଭାରେ ବସାଇ ଦେଲେ ସେ ମଧ୍ୟ ବ୍ରାହ୍ମଣ ଏବଂ ଶୁଆଟିଏ ଧରିଆଣି ତାକୁ "ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ" ଏପରି କହିବାକୁ ଶିଖାଇଦେଲେ ସେ ମଧ୍ୟ ବ୍ରାହ୍ମଣ ।

୩- ଅନ୍ନ-ବସ୍ତ୍ର ସଂସ୍ଥାନ କରିବାରୁ ପରିଶ୍ରମ କରିବା ଆମ୍ଭମାନଙ୍କ ମତରେ ବଡ଼ ନୀଚ କାର୍ଯ୍ୟ । ଯେଉଁମାନେ ଅନ୍ନ-ବସ୍ତ୍ରର ସଂସ୍ଥାନ ପାଇଁ ପରିଶ୍ରମ କରନ୍ତି ସେମାନଙ୍କୁ

ଆମ୍ଭେମାନେ ଚଷା ଓ ତନ୍ତି ବୋଲି କହି ଘୃଣାଚକ୍ଷୁରେ ଦେଖୁ । ଆମ୍ଭମାନଙ୍କର ଧାରଣା ଏହି କି ଆମ୍ଭମାନଙ୍କର ପିଲାମାନେ ପାଠପଢ଼ି ଚାକିରୀ କଲେ ଅଧିକ ଉପାର୍ଜନ କରି ସୁଖରେ ରହିବେ । ଏପରି ଧାରଣା ସମ୍ପୂର୍ଣ୍ଣ ଭ୍ରାନ୍ତ । ମନେକର ଗ୍ରାମର ଲୋକେ ସମସ୍ତେ ପାଠପଢ଼ି ଚାକିରି କଲେ ଏବଂ କିଏ ୫୦୦ ଟଙ୍କା କିଏ ୩୦୦ ଟଙ୍କା ବେତନ ପାଇଁ ପ୍ରତି ଗ୍ରାମକୁ ପ୍ରତି ମାସରେ ଲକ୍ଷାଧିକ ଟଙ୍କା ଆସିଲା । ଏହି ଟଙ୍କାକୁ ଖାଇ ଓ ଏହି ଟଙ୍କାକୁ ପିନ୍ଧି ଆମ୍ଭେମାନେ ବଞ୍ଚି ରହିବା କି ?

୪- ଆମ୍ଭେମାନେ ପ୍ରତ୍ୟେକ ବ୍ୟକ୍ତି ଯଦି ସମାଜ ଉପରେ ନିର୍ଭର କରି ଓ ସମାଜ ଉପରେ ଦୋଷାରୋପ କରି ନିଜେ ନିଶ୍ଚିନ୍ତ ରହୁଁ ଅର୍ଥାତ୍ ସମାଜରେ ସମସ୍ତେ ଯାହାସବୁ କରୁଅଛନ୍ତି ତାର ଅନୁସରଣ କରୁଁ, ତେବେ ସମାଜର ଦୂରବସ୍ଥା ଦୂର ହୋଇପାରିବ କି ?

୫- ଆମ୍ଭେମାନେ ସର୍ବଦା ସୁଖ ପାଉଅଛୁଁ ସତ୍ୟ, କିନ୍ତୁ ପାଗଳ ବା ଅନ୍ଧପରି ଛାଡ଼ି ଦେଉଅଛୁ । ଯେତେବେଳେ କୌଣସି ପଦାର୍ଥ ଲାଭ କରି ଆମ୍ଭେମାନେ ସୁଖ ପାଉଁ ସେତେବେଳେ ଯଦି ଆମ୍ଭେମାନେ ସେହି ଚିରବାଞ୍ଛିତ ସୁଖଟିକୁ ଧରିବାକୁ ଚେଷ୍ଟା କରନ୍ତୁ, ତେବେ ଆଉ କିଛି ଚିନ୍ତା ରହନ୍ତା ନାହିଁ । କିନ୍ତୁ ଆମ୍ଭେମାନେ ତାହା ନକରି ପ୍ରଥମେ (ସୁଖମୟ) ଜିନିଷଟିକୁ ଆଚ୍ଛାକରି ଧରିବାକୁ ଚେଷ୍ଟା କରୁଁ; ମନେକରୁଁ ଏହି ଜିନିଷଟିରେ ସମସ୍ତ ସୁଖ ରହିଅଛି । ଯଦି ଆମ୍ଭେମାନେ ଜିନିଷଟି ପାଇଲାବେଳେ କେବଳ ଏତିକି ମାତ୍ର ମନେ କରିପାରନ୍ତୁ ଯେ ଜିନିଷଟି ସକାଶେ ମୋର ସୁଖ ନୁହେଁ କିନ୍ତୁ ମୋର ସୁଖ ସକାଶେ ଏସବୁ ଜିନିଷର ସୃଷ୍ଟି, ତେବେ ଏ ସଂସାର ମୋ ପକ୍ଷରେ ଆନନ୍ଦମୟ ହୁଅନ୍ତା । ଗୋଟିଏ ଉଦାହରଣରୁ ବିଷୟଟି ସ୍ପଷ୍ଟ ବୁଝାଯିବ । ଅନେକ ଦିନ ବାଞ୍ଛିତ ଗୋଟିଏ ସନ୍ତାନ୍ ଜାତ ହେଲା । ଅନିତ୍ୟ ସନ୍ତାନର ଉତ୍ପତ୍ତି ସଙ୍ଗେ ସଙ୍ଗେ ସୁଖର ମଧ୍ୟ ଉତ୍ପତ୍ତି ହେଲା; ଉଭୟ ଜିନିଷର ଉତ୍ପତ୍ତି ହେଲା ସତ୍ୟ, ମାତ୍ର ମୁଁ ସୁଖଟିକୁ ଧରିବାକୁ ଚେଷ୍ଟା ନକରି ସେହି ଅନିତ୍ୟ ସନ୍ତାନଟିକୁ ସୁଖ ବୋଲି ଆଚ୍ଛାକରି ଧରିଲି । ସଂସାର ଯଥା ସମୟରେ ସନ୍ତାନଟିକୁ କାଢ଼ି ନେବାକୁ ଆସିଲା । ସଂସାର ସଙ୍ଗେ ଅନେକ ଯୁଦ୍ଧ କଲି । ମାତ୍ର ସଂସାର ଜୟୀ ହେଲା ଓ ସନ୍ତାନଟିକୁ ନେଇଗଲା । ମୁଁ ସଂସାର ଉପରେ ନିର୍ଦ୍ଦୟ ବୋଲି ଦୋଷାରୋପ କଲି । ସଂସାର କହିଲା ''ଭାଇରେ, ଏହି ସନ୍ତାନଟି ଜନ୍ମ ହେବାବେଳେ ମୁଁ କହିଦେଇଅଛି ଯେ ସୁଖଟି ତୋର ମାତ୍ର ଜିନିଷଟି ମୋର ।'' ତୁ ବାବୁ ! ସୁଖଟିକୁ ନଧରି, ସୁଖ କ'ଣ ତାହା ନ ବୁଝି ଜିନିଷଟିକୁ ସୁଖ ବୋଲି ଧରିଲୁ କାହିଁକି ? ମୋର ଦୋଷ କ'ଣ'' ?

# ଋଣ ପରିଶୋଧ ଓ ଗୃହତ୍ୟାଗ

ଆମ ଘର ନିକଟରେ ଗୋଟିଏ ପରିବାର ଋଣଗ୍ରସ୍ତ ଥିବାରୁ ମହାଜନ ନାଲିସ୍ କରି ସେହି ପରିବାର କୋରକ୍ କଲାବେଳେ ସେହି ପରିବାରର ଲୋକେ କିପରି ଅପମାନ ଓ ଦୁଃଖ ଭୋଗିଥିଲେ ତାହା ମୁଁ ଅନୁଭବ କରିଥିଲି ଏବଂ ପରେ ଜାଣିପାରିଲି ଯେ ସେଇ ପରିବାର ଋଣଗ୍ରସ୍ତ ହେବାର ପ୍ରଧାନ କାରଣ ହେଉଛି ଗହଣାରେ ଓ ନ୍ୟାୟ ନିମିତ୍ତରେ ଅଯଥା ଅପବ୍ୟୟ। ଆମ ଏକାନ୍ନବର୍ତ୍ତୀ ପରିବାରରେ ଆମର କରଜ ଥିଲା, ସୁଧ ଓ ଅସଲ ମିଶି ପ୍ରାୟ ୧୫୦୦ ଟଙ୍କା। ଆମ ପରିବାରକୁ କିପରି ଋଣମୁକ୍ତ କରିବି ଏହା ମୋ ମନକୁ ପ୍ରଥମେ ସ୍ପର୍ଶ କଲା। ପ୍ରାୟ ୫୦୦ ଟଙ୍କା କ୍ରମେ କ୍ରମେ ପରିଶୋଧ କଲି। ଆମ ଗ୍ରାମ ନିକଟରେ କୁମୁଡା ଜୟପୁର ଗ୍ରାମର ଗୋପୀ ଷଡଙ୍ଗୀ ନାମକ ଜଣେ ମହାଜନଠାରୁ ଆମର କରଜ ଥିଲା। ଅସଲ ୫୦୦ ଟଙ୍କା। ଏହି ଟଙ୍କାର ସୁଧ ଥିଲା ଶତକଡ଼ା ବର୍ଷକୁ ୨୫ ଟଙ୍କା। ମୁଁ ତାଙ୍କୁ ୨/୩ ବର୍ଷ ନିୟମିତ ଭାବରେ ପ୍ରତିବର୍ଷ ବର୍ଷକୁ ୧୨୫ ଟଙ୍କା ସୁଧ ଦେଲି। ସେହି ମହାଜନ କଚେରୀକୁ ଆସି ମୋତେ ଗୋଟିଏ ବର୍ଷର ସୁଧ ଦେବାକୁ କହିଲେ। ମୁଁ ତାଙ୍କୁ କହିଲି- ''ଆପଣ ମୋ ଠାରୁ ଯେଉଁ ଟଙ୍କା ପ୍ରତିବର୍ଷ ସୁଧ ଆଡ଼କୁ ନେଉଅଛନ୍ତି ସେହି ଟଙ୍କା ଆପଣ ଅନ୍ୟକୁ କରଜ ଦେଇ ସେଥିରୁ ମଧ ସୁଧ ପାଉଅଛନ୍ତି। ତେଣୁ ମୁଁ ଯେଉଁ ୧୨୫ ଟଙ୍କା ଦେଉଛି ଆପଣ ସେଥିରୁ ୧୦୦ ଟଙ୍କା ସୁଧ ଆଡ଼କୁ ନେଇ ଅବଶିଷ୍ଟ ୨୫ ଟଙ୍କା ଅସଲ ଆଡ଼କୁ ନିଅନ୍ତୁ।''

ସେ କହିଲେ- ମୁଁ ବର୍ତ୍ତମାନ କିଛି ଛାଡ଼ିବି ନାହିଁ। ସମସ୍ତ ଟଙ୍କା ପରିଶୋଧ କଲାବେଳେ ମୁଁ କିଛି ଟଙ୍କା ଛାଡ଼ିଦେବି।'' ମୁଁ କହିଲି- କିଛି ଛାଡ଼ି ଦେବାକୁ ମୁଁ ଆପଣଙ୍କୁ ଅନୁରୋଧ କରୁନାହିଁ ଏବଂ ପରିଶୋଧ କଲାବେଳେ ମଧ ମୋ କଥା ବିଚାର କରନ୍ତୁ ଏବଂ କିଛି ଟଙ୍କା ଛାଡ଼ି ଦିଅନ୍ତୁ ବୋଲି ଅନୁରୋଧ କରିବି ନାହିଁ। ନିୟମିତ ରୂପେ ସୁଧ ଦେଉଥିବାରୁ ତଦନୁସାରେ କିଛି ଟଙ୍କା ଅସଲ ଟଙ୍କା ଆଡକୁ ନିଅନ୍ତୁ ବୋଲି ମୁଁ ଦାବି କରୁଛି।'' ସେ ମହାଶୟ ମୋର କଥା ଶୁଣିଲେ ନାହିଁ। ମୁଁ ତାଙ୍କୁ ଯେଉଁ ୧୨୫ ଟଙ୍କା ଦେଇଥାଆନ୍ତି ତାହା ନ ଦେବାରୁ ସେ ମୋ ଉପରେ ବିରକ୍ତ ହୋଇ ଚାଲିଗଲେ। ସେ ଫେରିଯିବା ବେଳେ ମୁଁ ତାଙ୍କୁ କହିଲି- ''ଆପଣ ମନେ ରଖନ୍ତୁ, ଆପଣଙ୍କର ସବୁ ଟଙ୍କା ମୁଁ ଏହି ତିନିବର୍ଷ ଭିତରେ ପରିଶୋଧ କରିବି। ସେତେବେଳେ ମୁଁ କଚେରୀରୁ ଦରମା ପାଉଥାଏଁ ମାସିକ ୩୦ ଟଙ୍କା କି ୩୨ ଟଙ୍କା ଏବଂ ପୂର୍ବୋକ୍ତ ରାଧାପ୍ରସାଦ ଭଗତଙ୍କ ଘରୁ ପାଉଥାଏ ମାସିକ ୧୦ ଟଙ୍କା। ହିସାବ କରି ଦେଖିଲି ତିନିବର୍ଷ ପରେ ମହାଜନର ଆମ ଉପରେ ସୁଧ ୪୦୦ ଟଙ୍କା ଓ ମୂଳ ୫୦୦ ଟଙ୍କା । ଏ ରୂପେ ୯୦୦ ଟଙ୍କା ହୋଇଯିବ। ଏତିକି ଟଙ୍କାରେ ସବୁ ଟଙ୍କା

କିପରି ସୁଝିବି କିଛି ସ୍ଥିର କରିପାରିଲି ନାହିଁ। ତିନିବର୍ଷ ଭିତରେ ସବୁ ଟଙ୍କା ପରିଶୋଧ କରିବି ବୋଲି ମୁଁ ଯେ ମହାଜନ ନିକଟରେ ପ୍ରତିଜ୍ଞା କରିଛି ସେ କଥା ମୋ ମନରେ ସର୍ବଦା ଜାଗ୍ରତ ରହିଲା। ସେହି ଦିନଠାରୁ ମୁଁ ଡାଲି ନଖାଇ ଡାଲି ପରିବର୍ତ୍ତେ କିଛିଦିନ ଓଉ ଝୋଳ ଖାଇଲି। ପୋଖରୀରୁ କଳମ ଶାଗ ଆଣି ତରକାରୀ କଲି। ନୂଆ କମିଜ, କିମ୍ବା ଯୋତା କିଣିଲି ନାହିଁ। ମୋର ପୋଷାକ ଓ କାର୍ଯ୍ୟକଳାପ ଦେଖି ମୋତେ ସମସ୍ତେ ପାଗଳ ମନେ କଲେ। ଅଳ୍ପଦିନ ପରେ ମୋ ପାଖରେ କିଛି ଟଙ୍କା ଜମା ହେବାରୁ ମୁଁ କଚେରୀର କିରାଣୀମାନଙ୍କୁ ଭୋଜି ଦେଇ ସେମାନଙ୍କକରଜଠାରୁ ଅନେକ ଟଙ୍କା ସୁଧ ଆଦାୟ କଲି। କେହି ୨୦ ଟଙ୍କା କରଜ ମାଗିଲେ ମୁଁ ତାଙ୍କ ଠାରୁ ୩୦ ଟଙ୍କାର ହାଣ୍ଡନୋଟ୍ ଲେଖାଇ ନେଇ ତାଙ୍କୁ ତାଗିଦ୍ କରିଦିଏଁ ଯେ ମାସ ଶେଷରେ ସୁଧ ଏକ ଟଙ୍କା ମିଶାଇ ୨୧ ଟଙ୍କା ନଦେଲେ ମୁଁ ୩୦ ଟଙ୍କା ଦେଇଛି ବୋଲି ନାଲିସ୍ କରିଦେବି। କେତେକଙ୍କ ଠାରୁ ଗହଣା ବନ୍ଧକ ରଖି ବେଶୀ ସୁଧରେ କରଜ ଦେଲି। ମୋର ସାଇକେଲ, ଅଲିଷ୍ଟର, ୱାଚ ପ୍ରଭୃତି ଯାହା ବିକିବା ଜିନିଷ ଥିଲା ସବୁ ବିକିଲି। ମାତ୍ର ସବୁ ଟଙ୍କା ତିନିବର୍ଷ ମଧ୍ୟରେ ସଂଗ୍ରହ କରି ନପାରି ପୂର୍ବୋକ୍ତ ରାଧାପ୍ରସାଦ ଭଗତଙ୍କର ପୁତୁରା ଲଛମି ପ୍ରସାଦ ଭଗବତଙ୍କ ଠାରୁ ଶହେ କି ଦେଢ଼ଶହ ଟଙ୍କା ଧାର ଆଣି ମହାଜନର ସବୁ ଟଙ୍କା ପରିଶୋଧ କଲି। ଯେଉଁ ଟଙ୍କା ଚାରି ଭାଇଙ୍କର ସୁଝିବାର କଥା ତାହା ମୁଁ ଏକା ସୁଝିବା ଦେଖି ମୋତେ ସମସ୍ତେ ନିର୍ବୋଧ ମନେ କଲେ। ପରିବାରକୁ ଋଣରୁ ମୁକ୍ତ କଲାବେଳେ ମୋ ମନରେ ବିଶେଷ ଆନନ୍ଦ ଆସିଥିଲା। ମୁଁ ସେହଦିନ ମୋର ଭାଇମାନଙ୍କ ନିକଟରେ ପ୍ରତିଜ୍ଞା କଲି ଯେ ମୋ ଜୀବନରେ ମୁଁ ଟଙ୍କାଟିଏ ସୁଧା କରଜ କରିବି ନାହିଁ ଏବଂ ଆମ ପରିବାରରେ ପୁଣି କେହି କରଜ କଲେ ମୁଁ ଆମ ପରିବାରରେ ରହିବି ନାହିଁ। ଏହି ଘଟଣାର ଦୁଇବର୍ଷ ପରେ ମୁଁ ଜାଣିଲି ଯେ ବଡ଼ଭାଇ ପୁଣି ୨୦୦ ଟଙ୍କା କରଜ କରିଅଛନ୍ତି। ମୁଁ କହିଲି "ମୁଁ ଆଉ ଏହି ପରିବାରରେ ରହିବି ନାହିଁ।" ମୋର ଏହି କଥା ଶୁଣି ବାପା କହିଲେ- "ତୁ ତୋର ସ୍ତ୍ରୀ ଓ ପୁଅ ଝିଅଙ୍କୁ ସାଙ୍ଗରେ ନେଇ ଯା"। ସେ ଭାବିଲେ କାଳେ ମୁଁ ସେମାନଙ୍କୁ ଛାଡ଼ିଦେଇ ଘରୁ ଚାଲିଗଲେ ସେମାନଙ୍କର ଅବସ୍ଥା ଖରାପ ହେବ। ସେତେବେଳେ କେହି ନିଜର ସ୍ତ୍ରୀକୁ ବିଦେଶକୁ ନେଉନଥିଲେ। ଆମ ଗ୍ରାମର ଜଣେ ଓକିଲ ତାଙ୍କର ସ୍ତ୍ରୀଙ୍କୁ କଟକ ଆଣିଥିବାରୁ ତାଙ୍କୁ ପ୍ରାୟଶ୍ଚିତ କରିବାକୁ ଗ୍ରାମର ଲୋକେ ବାଧ କରିଥିଲେ। ଆମ ଘରଠାରୁ ନିକଟବର୍ତ୍ତୀ ଧାନମଣ୍ଡଳ ଷ୍ଟେସନ ପ୍ରାୟ ୬ ମାଇଲ ଦୂର। ସେତେବେଳେ ବର୍ଷାଦିନ ଥିବାରୁ ବଳଦ ଗାଡ଼ି ମିଳିଲା ନାହିଁ। ମୁଁ, ମୋର, ସ୍ତ୍ରୀ, ଦୁଇ ପୁଅ ଓ ଦୁଇ ଝିଅ ସମସ୍ତେ ଚାଲି-ଚାଲି ଷ୍ଟେସନକୁ ଆସିଲୁ। ରାସ୍ତାସବୁ ପାଣିରେ ବୁଡ଼ି ରହିଥିବାରୁ ପୁଅ ଦୁହେଁ ଦୁଇଖଣ୍ଡ ବାଡ଼ିଧରି ଚାଲିଲେ ଏବଂ ଦୁଇ ସାନଝିଅଙ୍କୁ ଆଣିବାକୁ ସଙ୍ଗରେ ଜଣେ ମୁଲିଆ ଆସିଲା। ଆମେ ଘରୁ ବାହାରିବାବେଳେ

ପେନସନ୍ ନିଏ ଏହା କଲେକ୍ଟର ସାହେବଙ୍କର ଅଭିପ୍ରାୟ ନୁହେଁ; ତେଣୁ ସେ ମୋତେ କହିଲେ, ଚାକିରୀ କରିବାକୁ ଯଦି ତୁମର ଇଚ୍ଛା ନାହିଁ ତୁମ୍ଭେ ଇସ୍ତଫା ଦିଅ । ଏହି କାରଣରୁ ମୁଁ ତୁମ୍ଭଙ୍କୁ ଇନ୍‌ଭ୍ୟାଲିଡ୍ ସାର୍ଟିଫିକେଟ୍ ଦେଇପାରିବି ନାହିଁ । ତାପରେ ମୁଁ ବିଶେଷ ଅନୁରୋଧ କରିବାରୁ ସେ ମୋତେ ପାଇଓରିଆ ବା ଦାନ୍ତ ରୋଗର ଚିକିତ୍ସା ପାଇଁ ଏକମାସ ଛୁଟି ଦେବାକୁ ରିପୋର୍ଟ କଲେ । ପୂର୍ବୋକ୍ତ ନିତ୍ୟାନନ୍ଦ ବାବୁ ଡ଼ାକ୍ତର ସାହେବଙ୍କୁ ପ୍ରକୃତ କଥା ନ ଜଣାଇ ଏପରି ଲେଖିବାର ବୋଧହୁଏ କାରଣ ଏହିକି ତାଙ୍କର ଗୋଟିଏ ୧୫-୧୬ବର୍ଷର ନାତୁଣୀ ଏଗାର ବାର ବର୍ଷ ବେଳେ ବିଧବା ହୋଇଥାଏ । ସେହି ଝିଅଟି ହେଉଛି ତାଙ୍କର ପଡ଼ୋଶୀ ଯଦୁନାଥ ମିଶ୍ରଙ୍କ ଝିଅ । ଯଦୁନାଥ ମିଶ୍ର କଲେକ୍ଟରୀ କଚେରୀରେ ଜଣେ କିରାଣୀ ଥିଲେ । ତାଙ୍କର ଏହି ଝିଅଟିର ବିବାହରେ ନିତ୍ୟାନନ୍ଦବାବୁ ସର୍ବଦା ବାଧା ଦେଉଥିଲେ । ନିତ୍ୟାନନ୍ଦ ବାବୁ ଦ୍ୱିତୀୟ ବାର ବିବାହ କରି ତାଙ୍କର ୫୨।୫୩ ବର୍ଷ ତଳେ ଅଳ୍ପ ଦିନ ପୂର୍ବେ ଗୋଟିଏ ପୁଅ ହୋଇଥାଏ । କେତେ ଜଣ କିରାଣୀଙ୍କ ସପକ୍ଷରେ ମୁଁ ତାଙ୍କୁ ଦିନେ କହିଥିଲି " ଏ ବୟସରେ ପେନ୍‌ସନ୍ (ନେବାବେଳେ) ଆପଣଙ୍କର ପୁଅ ହେଉଛି ଏବଂ ଆପଣଙ୍କର ପନ୍ଦର ଷୋଅଳ ବର୍ଷର ନାତୁଣୀ ବ୍ରହ୍ମଚର୍ଯ୍ୟ ପାଳୁଛି, ଏହା କେଉଁ ଧର୍ମ ଶାସ୍ତ୍ର କହୁଛି ?" ଏହି ଝିଅଟିକୁ ପଚିଶ ଛବିଶ ବର୍ଷ ବୟସରେ ମୁଁ ଉତ୍କଳ ଟ୍ୟାନାରୀ ଭୀମ ଚରଣ ଚୌଧୁରୀଙ୍କ ସହିତ ବିବାହ ଦେଇଛି । ଏହି ବିଷୟ ଏଥି ପୂର୍ବେ ଲେଖାଯାଇଅଛି । ମୋର ଏହି କଥାରେ ନିତ୍ୟାନନ୍ଦ ବାବୁ ବୋଧହୁଏ ରାଗିଥିବାରୁ ଡ଼ାକ୍ତର ସାହେବଙ୍କ ପାଖକୁ ଏପରି ଲେଖିଥିଲେ ।

ଅଳ୍ପଦିନ ପରେ ରାଧାନାଥ ମିତ୍ର ସିରସ୍ତାଦାର ଛୁଟିରୁ ଫେରିଲେ । ସେ ମଧ ଏହି ମାସକ ଛୁଟି ମୋତେ ଦେବେ ବୋଲି କହି ପ୍ରାୟ ୨ମାସ ଗଡ଼ାଇ ଦେଲେ । ଛୁଟି ଦେଉ ନଥିବା ବିଷୟ ମୁଁ କଲେକ୍ଟର ସାହେବଙ୍କୁ ଜଣାଇବାରୁ ସିରସ୍ତାଦାର ତାଙ୍କୁ ବୁଝାଇ ଦେଲେ ଯେ ପାଇଓରିଆ ଏପରି ଗୋଟିଏ ବେମାରୀ ନୁହେଁ ଯେ ଏ କିରାଣୀ କଚେରୀରେ କାମ କରିପାରିବ ନାହିଁ । କଲେକ୍ଟର ସାହେବ ତଦନୁସାରେ ଆଦେଶ ଦେଲେ ""Let Civil Surgeon report, if the clerk is absolutely unfit to do his work. "ଅର୍ଥାତ୍ ଏ କିରାଣୀ ଯେ କାମ କରିବାକୁ ସମ୍ପୂର୍ଣ୍ଣ ଅକ୍ଷମ ଏକଥା ଡାକ୍ତର ସାହେବ ରିପୋର୍ଟ କରନ୍ତୁ । ଏପରି ରିପୋର୍ଟ କରିବାକୁ ଡାକ୍ତର ସାହେବ ପ୍ରଥମେ ଅନିଚ୍ଛା ପ୍ରକାଶ କଲେ । ତାପରେ ମୁଁ ପ୍ରକୃତ ବିଷୟ ବୁଝାଇ ଦେବାରୁ ସିରସ୍ତାଦାର ମୋତେ ଏପରି ହରକତ କରୁଅଛନ୍ତି ବୋଲି ବୁଝିପାରି ରିପୋର୍ଟ କଲେ - "Although I recommended one month leave the clerk has not yet undergone any treatment. If further delay occurs in his treatment he will become absolutely unfit in future " ଅର୍ଥାତ୍ " ମୁଁ ଏକମାସ ଛୁଟି ସକାଶେ ଲେଖିଥିଲେ ମଧ ଏ ପର୍ଯ୍ୟନ୍ତ ଏ କିରାଣୀ

କୌଣସି ଚିକିତ୍ସା କରିନାହିଁ । ଚିକିତ୍ସାରେ ଅଧିକ ବିଳମ୍ବ ଘଟିଲେ ଭବିଷ୍ୟତରେ ସେ ସମ୍ପୂର୍ଣ୍ଣ ଅକ୍ଷମ ହୋଇଯିବ । କଲେକ୍ଟର ସାହେବ ଯେଉଁ ""Absolutely unfit " ଅର୍ଥାତ୍ ସମ୍ପୂର୍ଣ୍ଣ ଅକ୍ଷମ ହେବା କଥା ଲେଖିଥିଲେ ଡ଼ାକ୍ତର ସାହେବ ଠିକ୍ ସେହି ""Absolutely unfit "ଅର୍ଥାତ୍ ସମ୍ପୂର୍ଣ୍ଣ ଅକ୍ଷମ ହେବା କଥା ଲେଖି ରିପୋର୍ଟ କରିବାରୁ ସିରସ୍ତାଦାର ସେଥିରେ ଅପମାନିତ ହେଲେ ମଧ୍ୟ ମୋତେ ଛୁଟି ଦେବାକୁ ବାଧ୍ୟ ହେଲେ । ମୋ ସଙ୍ଗେ ଦେଖା ହେବା ମାତ୍ରେ ସିରସ୍ତାଦାର ମୋ ଉପରେ ରାଗିଯାଇ ମୋତେ କହିଲେ ""Mind Bairagi Babu, I won't grant you one day's extension " ଅର୍ଥାତ୍ ମନେରଖ ବୈରାଗୀ ବାବୁ ମୁଁ ତୁମକୁ ଆଉ ଦିନେ ସୁଦ୍ଧା ଅଧିକ ଛୁଟି ଦେବି ନାହିଁ । ମୁଁ ସାଙ୍ଗେ ସାଙ୍ଗେ କହି ପକାଇଲି - ""Mind Radhanath Babu I won't return to office. Pension money of Rs. 35/- per month won't stand in my way. " ଅର୍ଥାତ୍ ମନେରଖ ରାଧାନାଥ ବାବୁ ମୁଁ ଆଉ କଚେରୀକୁ ଫେରିବି ନାହିଁ । ପେନ୍‌ସନ୍ ଟ୩୫/- ମୋର ପ୍ରତିବନ୍ଧକ ହେବ ନାହିଁ । ମୋର ଛୁଟି ପାଇଥିବା କଥା ସିରସ୍ତାଦାର ମୋତେ ଖଣ୍ଡିଏ ସ୍ଲିପ୍‌ରେ ଜଣାଇ ଦେଲେ ଏବଂ ସେହି ସ୍ଲିପ୍‌ରେ ମୋତେ ଅନ୍ୟ ଜଣକୁ ଚାର୍ଯ ଦେବାକୁ ଲେଖିଲେ । କଲେକ୍ଟରଙ୍କର ଆଦେଶ ତଳେ ଚାର୍ଯ ଦେବା କଥା ଲେଖନ୍ତି । ତେଣୁ ମୁଁ ସେହି ସ୍ଲିପ୍‌ରେ ଚାର୍ଯ ଦେଲି ନାହିଁ ଏବଂ ମୋ ପାଖକୁ ଫାଇଲ ପଠାଇବାକୁ ଲେଖିଲି, ମାତ୍ର ସିରସ୍ତାଦାର ମୋ ପାଖକୁ ଫାଇଲ ନ ପଠାଇ ମୋତେ ତାଙ୍କ ନିକଟକୁ ଡ଼କାଇଲେ । ମୁଁ ଗଲିନାହିଁ । ସିରସ୍ତାଦାର ମୋତେ ଫାଇଲ ନଦେଖାଇ ସ୍ଲିପ୍‌ରେ ଚାର୍ଯ୍ୟ ଦେବାକୁ କହିବା ବିଷୟ ଡିପୋଟିଙ୍କ ଜରିଆରେ କଲେକ୍ଟରଙ୍କୁ ଜଣାଇଲି । ସିରସ୍ତାଦାର ମୋତେ ଆଉ ଦିନେ ମାତ୍ର ଛୁଟି ଦେବେ ନାହିଁ ବୋଲି କାହିଁକି କହିଲେ ତାହା ମଧ୍ୟ ସେହି ଦରଖାସ୍ତରେ ଜଣାଇଲି । ଡିପୋଟି ସବୁକଥା ବୁଝିପାରି ସିରସ୍ତାଦାରଙ୍କଠାରୁ ଫାଇଲ ଅଣାଇ ମୋତେ ଦେଲେ ଏବଂ କହିଲେ ''ତୁମ୍ଭେ ତ ଜିତିଲ, ଆଉ କଲେକ୍ଟରଙ୍କୁ ଏହି ଦରଖାସ୍ତ ଦିଅ ନାହିଁ । ଡିପୋଟିଙ୍କ କଥା ମାନି ମୁଁ ଦରଖାସ୍ତଟି ଫେରାଇ ଆଣିଲି । ସେତେବେଳେ କଚେରୀ ସକାଳୁଆ ହେଉଥାଏ । ୧୯୪୨ ସାଲ ମଇ ମାସ ତା୮ରିଖ ୧୨ଟା ବେଳେ ମୁଁ ଚାର୍ଯ ଦେଇ କଚେରୀରୁ ବିଦାୟ ନେଲି । ସେହି ଦିନ ସନ୍ଧ୍ୟାବେଳେ କାଜି ବଜାର ଛକରେ ରାଧାନାଥ ମିତ୍ର ସିରସ୍ତାଦାରଙ୍କ ସଙ୍ଗେ ମୋର ଦେଖାହେଲା । ସେ ମୋତେ କହିଲେ ''ଆଜି ସକାଳେ ତୁମେ ମୋ ଉପରେ ରାଗିଲ କାହିଁକି ? ମୁଁ କହିଲି - ''ମୁଁ ଆପଣଙ୍କ ଉପରେ ଆଦୌ ରାଗିନାହିଁ । ରାଗିଥିଲେ ରାଗିଚି, କଚେରୀର ସିରସ୍ତାଦାରଙ୍କ ଉପରେ । ଆପଣ ମୋର ଜଣେ ବନ୍ଧୁ ଓ ଭାଇ'' । ସେ ମୋ ପିଠିରେ ହାତ ମାରି କହିଲେ - ''ତୁମେ ଯେ କୌଣସି ଡ଼ାକ୍ତର କିମ୍ବା କବିରାଜଙ୍କ ପାଖରୁ ମଧ୍ୟ ସାର୍ଟିଫିକେଟ୍ ପଠାଇଦେଲେ ମୁଁ ତୁମ୍ଭର ଛୁଟି ମଞ୍ଜୁର କରାଇଦେବି'' । ଏପରି

କହିଲେ ସୁଦ୍ଧା ପୂର୍ବ ରାଗ ତାଙ୍କ ମନରୁ ଯାଇ ନଥିଲା ବୋଲି ମୁଁ ପରେ ବୁଝିପାରିଲି। ଏହି ଛୁଟି ପାଇବା ପରେ ମୁଁ ମୋର ସାନଝିଅ ଘର ବାରିପଦାକୁ ଗଲି। ସେଠାରୁ ଜଣେ ଆସିଷ୍ଟାଣ୍ଟ ସର୍ଜନଙ୍କଠାରୁ ସାର୍ଟିଫିକେଟ୍ ଦେଇ ପୁଣି ୩ମାସ ଛୁଟି ମାଗିଲି। ସିରସ୍ତାଦାର ସେଥିରେ କଟକ ଡାକ୍ତର ସାହେବଙ୍କଠାରୁ ସାର୍ଟିଫିକେଟ୍ ଦେବାକୁ ଆଦେଶ କରାଇଲେ। ମୁଁ ତାପରେ ମୋର ବଡ଼ଝିଅ ନିକଟକୁ ହଜାରିବାଗ୍ ଜିଲ୍ଲା ଅରଗଡ଼ା ନାମକ ସ୍ଥାନକୁ ଚାଲିଗଲି ଏବଂ ସେଠାରୁ ଲେଖିଲି ହଜାରିବାଗ ଡାକ୍ତର ସାହେବଙ୍କଠାରୁ ସାର୍ଟିଫିକେଟ୍ ଦେବାକୁ ମୋତେ ଆଦେଶ ହେଉ। ଇତି ମଧ୍ୟରେ ୩ମାସ ବିନା ଛୁଟିରେ ଶେଷ ହେଲା ଏବଂ ମୋ ପାଖକୁ ଚିଠି ଗଲା "ତୁମ୍ଭେ ବିନା ଛୁଟିରେ ରହିଥିବାରୁ କାହିଁକି ଡିସ୍‌ମିସ୍ ନହେବ ତାର କାରଣ ଦେଖାଅ ?" ଅରଗଡ଼ାର ଡାକ୍ତରଙ୍କ ସଙ୍ଗେ ମୋର ସଦ୍‌ଭାବ ଥିଲା। କଲେକ୍ଟର ସାହେବଙ୍କର ଏହି ଚିଠି ମୁଁ ତାଙ୍କୁ ଦେଖାଇଲି। ମୁଁ ଡିସ୍‌ମିସ୍ ହେବା ଖୁବ୍ ସମ୍ଭବ ଏକଥା ସେ ବୁଝିପାରି ହଜାରିବାଗ ଡାକ୍ତର ସାହେବଙ୍କ ପାଖକୁ ମୋ ହାତରେ ଖଣ୍ଡେ ଚିଠି ଦେଲେ। ସେହି ଚିଠି ଦେଖି ଡାକ୍ତର ସାହେବ ମୋତେ ୬ମାସ ଛୁଟି ପାଇଁ ସାର୍ଟିଫିକେଟ୍ ଦେଲେ। ଏହି ଛୁଟି ପୂର୍ଣ୍ଣ ନ ହେଉଣୁ ମୁଁ ସେହି ଡାକ୍ତର ସାହେବଙ୍କଠାରୁ ଇନ୍‌ଭାଲିଡ୍ ସାର୍ଟିଫିକେଟ୍ ଆଣି ପେନ୍‌ସନ୍ ନେଲି ଏବଂ ବଡ଼ଝିଅ ଘରେ ରହି ରାଞ୍ଚି ଟ୍ରେଜେରୀରୁ ପେନସନ୍ ଟଙ୍କା ଆଣିଲି।

ସିରସ୍ତାଦାରଙ୍କର ଏପରି ରିପୋର୍ଟ କରିବା କଥା ଏବଂ କଟକର ଡାକ୍ତର ସାହେବ ମୋତେ ଇନ୍‌ଭାଲିଡ୍ ସାର୍ଟିଫିକେଟ୍ ନ ଦେବା କଥା ମୁଁ ଯଦି ଯଥା ସମୟରେ ଆପତ୍ତି କରିଥାନ୍ତି ତେବେ କଲେକ୍ଟର ସାହେବ ନିୟମ ଅନୁସାରେ ମୋତେ ଛୁଟି ଦେବାକୁ ବାଧ୍ୟ ହୋଇଥାନ୍ତେ। ମାତ୍ର ମୋର ଟିକେ ଏକଯିଦିଆ ସ୍ୱଭାବ ହେତୁ ଦୁଇ ସିରସ୍ତାଦାରଙ୍କ ସଙ୍ଗେ ମୁଁ ଯୁଦ୍ଧ କରିବାରେ ରହିଗଲି ଏବଂ ଦୁଇ ବର୍ଷ ଚାରି ମାସ ଛୁଟି ପାଇବା ଯେ ମୋର ନ୍ୟାର୍ଯ୍ୟ ଅଧିକାର ଏକଥା ମୁଁ ସେତେବେଳେ ଭୁଲିଗଲି। ଏହି ଏକଯିଦିଆ ସ୍ୱଭାବ ମୋର ଆଜି ପର୍ଯ୍ୟନ୍ତ ରହିଛି ଏବଂ ଏଥିପାଇଁ ମୋତେ ବେଳେ ବେଳେ ଅନେକ ହରକତ ହେବାକୁ ହୁଏ। ଆଉ ମଧ୍ୟ ମୁଁ ଯଦି ନିତ୍ୟାନନ୍ଦ ବାବୁ ସିରସ୍ତାଦାରଙ୍କୁ ତାଙ୍କର ବୃଦ୍ଧ ବୟସରେ ପୁଅ ହେବା କଥା ଓ ୧୫-୧୬ବର୍ଷର ନାତୁଣୀ ବୈଧବ୍ୟ ପାଳିବା କଥା ଅନ୍ୟ କିରାଣୀମାନଙ୍କ ସମ୍ମୁଖରେ ନ କହି ଏକୁଟିଆ ତାଙ୍କୁ ନମ୍ର ଭାବରେ ବୁଝାଇ ଦେଇଥାନ୍ତି ତେବେ ସେ ମହାଶୟ ମଧ୍ୟ ଡ଼ାକ୍ତର ସାହେବଙ୍କ ନିକଟକୁ ଏପରି ଲେଖି ନ ଥାନ୍ତେ।

## ଗୀତାର ନୂଆଭାଷ୍ୟ

ରାଞ୍ଚି ଟ୍ରେଜେରୀରୁ ପେନସନ୍ ଆଣି ହଜାରିବାଗ୍ ଜିଲ୍ଲା ଅରଗଡ଼ାଠାରେ ମୋର ବଡ଼ଝିଅ ନିକଟରେ ମୁଁ ପ୍ରାୟ ଏକ ବର୍ଷ ରହିଲି। ସେଠାରେ ଗୋଟିଏ କୋଇଲା ଖଣି

ଅଛି । ସେହି କୋଇଲା ଖଣିର କର୍ମଚାରୀମାନଙ୍କ ସଙ୍ଗେ ମୁଁ ସନ୍ଧ୍ୟାବେଳେ ବୁଲିବାକୁ ଯାଏ । ବୁଲିବା ବେଳେ ଆମ୍ଭମାନଙ୍କ ମଧ୍ୟରେ ଅନେକ ସମୟରେ ଧର୍ମ ଓ ସଂସ୍କାର ବିଷୟରେ କଥାବାର୍ତ୍ତା ହୁଏ । ଦିନେ ସେଠାରେ ଡ଼ାକ୍ତରଖାନା କମ୍ପାଉଣ୍ଡର ମୂର୍ତ୍ତିପୂଜା ବିରୁଦ୍ଧରେ ଏବଂ କୋଇଲା ଖଣି ଅଫିସ୍ ହେଡ୍‌କିରାଣୀ ମୂର୍ତ୍ତିପୂଜା ସପକ୍ଷରେ ଯୁକ୍ତିକରି କହିଲେ ଯେ ଭଗବଦ୍ ଗୀତାରେ ମୂର୍ତ୍ତି ପୂଜାର ପ୍ରଶଂସା କରାଯାଇଅଛି । ଦୁହେଁ ମୋର ମତ ପଚାରିବାରୁ ମୁଁ କହିଲି, ମୁଁ ଭଗବଦ୍‌ଗୀତା ପଢ଼ିନାହିଁ । ଭଗବଦ୍ ଗୀତାରେ କେଉଁଠାରେ ମୂର୍ତ୍ତି ପୂଜାର ପ୍ରଶଂସା କରାଯାଇଅଛି ବୋଲି ହେଡ୍‌କିରାଣୀଙ୍କୁ ପଚାରିବାରୁ ସେ ମହାଶୟ ଗୀତାରୁ ମୂଳ ଶ୍ଳୋକ ଉଦ୍ଧାର କରି ପ୍ରକୃତ କଥା ବୁଝାଇ ପାରିଲେ ନାହିଁ । କାରଣ ମୂଳ ଶ୍ଳୋକରେ ଯାହାଅଛି ତାହା ତାଙ୍କୁ ଜଣାନାହିଁ । କେବଳ ଟୀକାକାରମାନଙ୍କର ଟୀକା ପଢ଼ି ତାଙ୍କ ମନରେ ଏପରି ଧାରଣା ଜନ୍ମିଅଛି । ସେ ମୋତେ କହିଲେ - ''ଆପଣ ଦ୍ୱାଦଶ ଅଧ୍ୟାୟ ପ୍ରଥମ ପାଞ୍ଚୋଟି ଶ୍ଳୋକ ପଢ଼ିଲେ ଜାଣିପାରିବେ ।'' ଫେରିବା ପରେ ସେହି ସନ୍ଧ୍ୟାବେଳେ ସେହି ହେଡ୍‌କିରାଣୀଙ୍କ ଘରେ ମୁଁ ଏହି ପାଞ୍ଚୋଟି ଶ୍ଳୋକ ପଢ଼ିଲି । ମୁଁ ଦେଖିଲି ଗୀତାର ଭାଷା ଅତି ସରଳ । ମୂଳ ଶ୍ଳୋକରେ ମୂର୍ତ୍ତି ପୂଜାର କଥା କିଛି ନାହିଁ । ଏହି ପାଞ୍ଚୋଟି ଶ୍ଳୋକରୁ ବୁଝିଲି ଯେ ଗୀତାର ଟୀକାକାରମାନେ ମୂଳ ଶ୍ଳୋକରେ ସାକାର ଓ ନିରାକାର ଏହି ଦୁଇଟି ନୂଆ କଥା ଯୋଗ କରିଦେଇ ମୂର୍ତ୍ତି ପୂଜାର ପ୍ରଶଂସା କରିଅଛନ୍ତି । ପଞ୍ଚମ ଶ୍ଳୋକଟିରୁ ବୁଝିଲି ଯେ ମୂର୍ତ୍ତି ପୂଜାର ପ୍ରଶଂସା କରିବା ତେଣିକି ଥାଉ, ଅବ୍ୟକ୍ତ ଭଗବାନ୍, ଅବ୍ୟକ୍ତ ପରମାତ୍ମା ଇତ୍ୟାଦି କୌଣସି ଅବ୍ୟକ୍ତରେ ଆସକ୍ତ ରହିବାକୁ ଗୀତା ସ୍ପଷ୍ଟାକ୍ଷରରେ ବାରଣ କରିଅଛି । ଗୀତାର ଏହି ନୂତନ ଶିକ୍ଷା ମୋ ମନକୁ ବିଶେଷ ଭାବରେ ସ୍ପର୍ଶ କଲା ଏବଂ ଗୀତା ପଢ଼ିବାକୁ ମୋର ବିଶେଷ ଆଗ୍ରହ ଜନ୍ମିଲା । ପ୍ରଥମ ଅଧ୍ୟାୟ ୪୪ ଶ୍ଳୋକରେ ଥିବା ''ଅନୁଶୁଶ୍ରୁମ'' କଥାଟିରୁ ବୁଝିଲି ଯେ ଏହି ''ଅନୁଶୁଶ୍ରୁମ'' କଥାଟି ହେଉଛି ଗୀତାର ମୂଳଭିତ୍ତି ଏବଂ ଅର୍ଜୁନଙ୍କ ମୁହଁରେ ଏହି କଥାଟି କୁହାଇବା ଦ୍ୱାରା ଯାବତୀୟ ଅନ୍ଧବିଶ୍ୱାସ ଓ ଅନ୍ଧାନୁସରଣ ମୂଳରେ ଗୀତାକାର କୁଠାରାଘାତ କରିଅଛନ୍ତି । ଗୀତାର ଏହି ମୂଳଭିତ୍ତି ଉପରେ କାହାରି ଦୃଷ୍ଟି ପଡ଼ିନାହିଁ ଦେଖି ''ଗୀତାର ଅନୁଶୁଶ୍ରୁମ'' ନାମକ ଖଣ୍ଡିଏ ବହି ମୁଁ ପ୍ରକାଶ କଲି । ତୃତୀୟ ଅଧ୍ୟାୟ ୨୨ଶ୍ଳୋକରେ ଥିବା ''ସଙ୍କରସ୍ୟ'' କଥାଟିକୁ ଗୀତାର ଟୀକାକାରମାନେ ''ବର୍ଣ୍ଣ ସଙ୍କରସ୍ୟ'' ବୋଲି ଅର୍ଥ କରିଅଛନ୍ତି । ''ସଙ୍କର'' କଥାଟିର ସାର୍ବଜନୀନତା ନଷ୍ଟ କରିବାର କୌଣସି କାରଣ ନଦେଖି ମୁଁ ''ସଙ୍କରରୁ ବର୍ଣ୍ଣ ସଙ୍କର'' ନାମକ ବହି ଖଣ୍ଡିଏ ପ୍ରକାଶ କଲି । ଦ୍ୱିତୀୟ ଅଧ୍ୟାୟ ୩୯ ଶ୍ଳୋକଟି ପଢ଼ି ବୁଝିଲି ଯେ, ଗୀତାର ପ୍ରକୃତ ଶିକ୍ଷା ଓ ସମ୍ପୂର୍ଣ୍ଣ ନୂତନ ଶିକ୍ଷା ଏହିଠାରୁ

ଆରମ୍ଭ ହୋଇଅଛି । ସେହି ଶ୍ଳୋକଟି ହେଉଛି :-

*ଏଷା ତେଽଭିହିତା ସାଂଖ୍ୟେ ବୁଦ୍ଧିର୍ଯୋଗେ ତ୍ୱିମାଂ ଶ୍ରୁଣୁ*
*ବୁଦ୍ଧ୍ୟା ଯୁକ୍ତୋ ଯୟା ପାର୍ଥ ! କର୍ମବନ୍ଧଂ ପ୍ରହାସ୍ୟସି ।*

ଅନ୍ୱୟ - ଏଷା ବୁଦ୍ଧିଃ ତେ ସାଂଖ୍ୟେ ଅଭିହିତା; ଯୋଗେ ତୁ ଇମାଂ (ବୁଦ୍ଧିଂ) ଶ୍ରୁଣୁ; ଯୟା ବୁଦ୍ଧ୍ୟା ଯୁକ୍ତଃ ସନ୍ ହେ ପାର୍ଥ ! (ତ୍ୱଂ) କର୍ମବନ୍ଧଂ ପ୍ରହାଷ୍ୟସି ।

ଅର୍ଥ - ଏହି ବୁଦ୍ଧି ତୁମ୍ଭଙ୍କୁ ସାଂଖ୍ୟରେ କୁହାଗଲା, ଏହି ବୁଦ୍ଧି ତୁମ୍ଭେ (ବର୍ତ୍ତମାନ) ଯୋଗରେ ଶୁଣ; ଯେଉଁ ବୁଦ୍ଧିରେ ଯୁକ୍ତ ହେଲେ ହେ ପାର୍ଥ ! ତୁମ୍ଭେ କର୍ମ ବନ୍ଧନରୁ ମୁକ୍ତ ହେବ ।

ଗୀତାକାର ସର୍ବପ୍ରଥମେ ଏହିଠାରେ ''ବୁଦ୍ଧି'' କଥାଟି ବ୍ୟବହାର କରିଅଛନ୍ତି ଏବଂ ''ବୁଦ୍ଧି'' କଥାଟିକୁ ସାଖ୍ୟବୁଦ୍ଧି ଓ ଯୋଗବୁଦ୍ଧି ଏହି ଦୁଇ ଭାଗରେ ବିଭକ୍ତ କରି ସାଂଖ୍ୟବୁଦ୍ଧିକୁ ଅର୍ଥାତ୍ ପୁସ୍ତକଗତ ବୁଦ୍ଧିକୁ ନିନ୍ଦା କରିଅଛନ୍ତି ଏବଂ ଯୋଗ ବୁଦ୍ଧିକୁ ଅର୍ଥାତ୍ କର୍ମାତ୍ମିକା ବୁଦ୍ଧିକୁ ପ୍ରଶଂସା କରିଅଛନ୍ତି । ମାତ୍ର ଗୀତାର ଟୀକାକାରମାନେ ନିଜର ମନଗଢ଼ା କଥାସବୁ ଯୋଗ କରିଦେଇ ଠିକ୍ ବିପରୀତ ଅର୍ଥ କରିଅଛନ୍ତି ଅର୍ଥାତ୍ ସାଂଖ୍ୟ ବୁଦ୍ଧିକୁ ପ୍ରଶଂସା କରି ଯୋଗ ବୁଦ୍ଧିକୁ ତଦପେକ୍ଷା ନିମ୍ନତର ସ୍ଥାନ ଦେଇଅଛନ୍ତି । ଏହି ଅଧ୍ୟାୟ ୪୧ ଶ୍ଳୋକରେ ଥିବା ''ବ୍ୟବସାୟାତ୍ମିକା'' ''ବୁଦ୍ଧି'' କଥାଟିକୁ ସମସ୍ତେ ନିଶ୍ଚୟାତ୍ମିକା ବୁଦ୍ଧି ବୋଲି ଅର୍ଥ କରିଅଛନ୍ତି ଏବଂ ଈଶ୍ୱରଙ୍କୁ ଭକ୍ତି କଲେ ମୁକ୍ତି ନିଶ୍ଚୟ ମିଳିବ ଏହି ବୁଦ୍ଧିକୁ ନିଶ୍ଚୟାତ୍ମିକା ବୁଦ୍ଧି ବୋଲି ଶ୍ରୀଧର ସ୍ୱାମୀ ପ୍ରଭୃତି ଅନେକ ଟୀକାକାର ବାଖ୍ୟା କରିଅଛନ୍ତି । ମୁଁ ଦେଖିଲି ପୂର୍ବୋକ୍ତ ୩୯ଶ୍ଳୋକରେ କହିଥିବା ଯୋଗବୁଦ୍ଧି କଥାଟିକୁ ବୁଝାଇବା ଅଭିପ୍ରାୟରେ ୨ୟ ଅଧ୍ୟାୟ ୪୧ ଶ୍ଳୋକରେ ଯୋଗବୁଦ୍ଧି କଥାଟି ପରିବର୍ତ୍ତେ ଗୀତାକାର ''ବ୍ୟବସାୟାତ୍ମିକା ବୁଦ୍ଧି'' କଥାଟି ବ୍ୟବହାର କରିଅଛନ୍ତି । ଏହି କଥାଟିର ପ୍ରକୃତ ଅର୍ଥ ହେଉଛି କର୍ମାତ୍ମିକା ବୁଦ୍ଧି''। ଏହି ଅଧ୍ୟାୟ ୪୨ ଶ୍ଳୋକରେ ଥିବା ''ଅବିପଶ୍ଚିତ'' କଥାଟିରୁ ବୁଝିଲି ଯେ, ଶାସ୍ତ୍ରବିଧି ସବୁର ଅନ୍ଧାନୁସରଣକାରୀମାନଙ୍କୁ ଗୀତାକାର ଅବିବେକୀ ବା ମୂଢ଼ ବୋଲି କହିଅଛନ୍ତି । ଏହି ଅଧ୍ୟାୟ ୪୯ଶ୍ଳୋକରେ ଥିବା ''ବୁଦ୍ଧୌ ଶରଣମନ୍ୱିଚ୍ଛ'' କଥାଟିର ପ୍ରକୃତ ଅର୍ଥ ହେଉଛି ''ବୁଦ୍ଧିର ଶରଣ ନେବାକୁ ଇଚ୍ଛାକର ।'' ଏହି ସରଳ କଥାଟିକୁ ଶଙ୍କରାଚାର୍ଯ୍ୟ ଅର୍ଥ କରିଅଛନ୍ତି ''ସାଂଖ୍ୟବୁଦ୍ଧିର ଶରଣ ନେବାକୁ ଇଚ୍ଛା କର'' ଏବଂ ଶ୍ରୀଧର ସ୍ୱାମୀ ଅର୍ଥ କରିଅଛନ୍ତି '' ଈଶ୍ୱରଙ୍କର ଶରଣ ନେବାକୁ ଇଚ୍ଛା କର''। ମୁଁ ବୁଝିଲି ଗୀତାକାର ନିନ୍ଦାକରୁଥିବା ସାଂଖ୍ୟ ବୁଦ୍ଧିକୁ ଅର୍ଥାତ୍ ପୁସ୍ତକଗତ ବୁଦ୍ଧିକୁ ସମର୍ଥନ କରିବା ଅଭିପ୍ରାୟରେ ଶଙ୍କରାଚାର୍ଯ୍ୟ ''ସାଂଖ୍ୟ'' ଏହି ବିଶେଷଣଟି ଯୋଗ କରିଅଛନ୍ତି । ସେ ଯାହାହେଉ ''ବୁଦ୍ଧି'' ଏହି କଥାଟିକୁ ଅର୍ଥ କଲାବେଳେ ସେଥିରେ ''ସାଂଖ୍ୟ'' ଏହି ବିଶେଷଣଟି କାହିଁକି ଯୋଗ କରାଯିବ ଏବଂ

"ବୁଦ୍ଧି" ଏହି କଥାଟିର ଅର୍ଥ ସେହି ବୁଦ୍ଧି ନରହି ସାଂଖ୍ୟବୁଦ୍ଧି କିମ୍ବା ଈଶ୍ୱର କାହିଁକି ହେବ ତାର କୌଣସି କାରଣ ନାହିଁ। ନିମ୍ନଲିଖିତ ଦୁଇଟି ଶ୍ଳୋକରୁ ମୁଁ ବୁଝିପାରିଲି ଏବଂ ଆପଣମାନେ ମଧ୍ୟ ପରବର୍ତ୍ତୀ ଆଲୋଚନାରୁ ସଂଶୟଶୂନ୍ୟ ହୋଇ ବୁଝିପାରିବେ ଯେ ଗୀତାର ଉପଦେଶ ସମ୍ପୂର୍ଣ୍ଣ ନୂତନ ଏବଂ ଆମ୍ଭମାନଙ୍କର ବଦ୍ଧମୂଳ ଧାରଣା ସବୁର ସମ୍ପୂର୍ଣ୍ଣ ବିପରୀତ ଥିବାରୁ ଗୀତାର ଟୀକାକାରମାନେ ଏପରି ବିପରୀତ ଅର୍ଥ କରି ନିଜ ନିଜର ବଦ୍ଧମୂଳ ଧାରଣାକୁ ସମର୍ଥନ କରିବାକୁ ଚେଷ୍ଟା କରିଅଛନ୍ତି।

ଶ୍ଳୋକ ଦୁଇଟି ତଳେ ଦିଆଗଲା -

*ତ୍ରୈଗୁଣ୍ୟବିଷୟା ବେଦା ନିସ୍ତ୍ରୈଗୁଣ୍ୟୋ ଭବାର୍ଜ୍ଜୁନ !*
*ନିର୍ଦ୍ୱନ୍ଦ୍ୱୋ ନିତ୍ୟ ସତ୍ତ୍ୱସ୍ଥୋ ନିର୍ଯୋଗକ୍ଷେମ ଆତ୍ମବାନ।(୨ୟ-୪୫)*

*ଶ୍ରେୟାନ୍ ସ୍ୱଧର୍ମୋ ବିଗୁଣଃ ପରଧର୍ମାଽତ୍ ସ୍ୱନୁଷ୍ଠିତାତ୍।*
*ସ୍ୱଭାବନିୟତଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍।।(୧୮ଶ-୪୭)*

ପ୍ରଥମ ଶ୍ଳୋକର ଅନ୍ୱୟ - ବେଦାଃ ତ୍ରୈଗୁଣ୍ୟଃ ବିଷୟାଃ,

**ହେ ଅର୍ଜ୍ଜୁନ ! (ତ୍ୱଂ) ନିସ୍ତ୍ରୈଗୁଣ୍ୟଃ ଭବ; ନିର୍ଦ୍ୱନ୍ଦ୍ୱଃ,**
**ନିତ୍ୟ ସତ୍ତ୍ୱସ୍ଥଃ, ନିର୍ଯୋଗକ୍ଷେମଃ, ଆତ୍ମବାନ୍ ଭବ।।**

ଅର୍ଥ - ବେଦ ସବୁ ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣ ସମ୍ବନ୍ଧୀୟ। ହେ ଅର୍ଜ୍ଜୁନ ! ତୁମ୍ଭେ ଏହି ତିନିଗୁଣରୁ ବାହାର ହୁଅ ଏବଂ ଦ୍ୱନ୍ଦ୍ୱାତୀତ ହୁଅ, ଯୋଗ ଓ କ୍ଷେମରୁ ବାହାର ହୁଅ, ଆତ୍ମବାନ୍ ହୁଅ ଏବଂ ସର୍ବଦା ସତ୍ତ୍ୱସ୍ଥ ହୁଅ।

ପୂର୍ବବର୍ତ୍ତୀ ୪୨,୪୩ ଓ ୪୪ ଶ୍ଳୋକରୁ ଜାଣିପାରିବେ ଯେ ଏଠାରେ ଗୀତାକାର ବେଦାତୀତ ହେବାକୁ ଉପଦେଶ ଦେଇଅଛନ୍ତି ଏବଂ ବେଦାତୀତ ହେବାକୁ ଉପଦେଶ ଦେବାକୁ ଯାଇ ଗୁଣାତୀତ, ଦ୍ୱନ୍ଦ୍ୱାତୀତ, ଯୋଗକ୍ଷେମରୁ ଅତୀତ, ଆତ୍ମବାନ୍ ଓ ସତ୍ତ୍ୱସ୍ଥ ହେବାକୁ କହିଅଛନ୍ତି। ଅତଏବ ଗୀତାକାରଙ୍କର ଏଠାରେ ଅଭିପ୍ରାୟ ଏହି କି ମନୁଷ୍ୟ ବେଦାତୀତ ହୋଇପାରିଲେ ଦ୍ୱନ୍ଦ୍ୱାତୀତ, ଯୋଗ ଓ କ୍ଷେମରୁ ଅତୀତ ଆତ୍ମବାନ୍ ଓ ସତ୍ତ୍ୱସ୍ଥ ହୋଇପାରିବ। ବର୍ତ୍ତମାନ ବୁଝନ୍ତୁ, ବେଦାତୀତ ହେବା, ଗୁଣାତୀତ ଦ୍ୱନ୍ଦ୍ୱାତୀତ ହେବା, ଯୋଗକ୍ଷେମରୁ ଅତୀତ ହେବା, ଆତ୍ମବାନ୍ ହେବା ଓ ସତ୍ତ୍ୱସ୍ଥ ହେବା ଏମାନେ ସମସ୍ତେ ଏକା କଥା।

ଏହି ଶ୍ଳୋକରେ ଥିବା ପୂର୍ବୋକ୍ତ ପାଞ୍ଚଟି କଥାର ଆଲୋଚନା ଏଠାରେ ସମ୍ପୂର୍ଣ୍ଣ ଅନାବଶ୍ୟକ। ଆଉ ମଧ୍ୟ ତାହା ସବୁ ଆଲୋଚନା କଲେ ସ୍ୱତନ୍ତ୍ର ଖଣ୍ଡିଏ ବହି ହେବ। ତେଣୁ "ସତ୍ତ୍ୱସ୍ଥ ହୁଅ" କେବଳ ଏହି କଥାଟିର ଆଲୋଚନାରେ ଅଗ୍ରସର ହୁଅନ୍ତୁ। "ସତ୍ତ୍ୱସ୍ଥ ହୁଅ" ଏହି କଥାଟିକୁ ଶଙ୍କରାଚାର୍ଯ୍ୟ ଅର୍ଥ କରିଅଛନ୍ତି "ସତ୍ତ୍ୱଗୁଣ- ମାଶ୍ରିତୋ

ଭବଃ'' - ଅର୍ଥାତ୍ ସତ୍ତ୍ୱଗୁଣକୁ ଆଶ୍ରୟ କରି ରୁହ, ଯାହା ସମ୍ପୂର୍ଣ୍ଣ ଅସଙ୍ଗତ । କାରଣ ଏହି ଶ୍ଳୋକର ପ୍ରଥମ ଧାଡ଼ିରେ ଗୀତାକାର ଗୁଣାତୀତ ହେବାକୁ କହି ଅର୍ଥାତ୍ ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣରୁ ବାହାରିଯିବାକୁ କହି ଦ୍ୱିତୀୟ ଧାଡ଼ିରେ ସତ୍ତ୍ୱଗୁଣର ଆଶ୍ରୟ ନେବାକୁ କହିବା ସମ୍ପୂର୍ଣ୍ଣ ଅଯୌକ୍ତିକ । ଆଉ ମଧ ଚତୁର୍ଦ୍ଦଶ ଅଧ୍ୟାୟରେ ଗୀତାକାର କହିଅଛନ୍ତି ଯେ ସତ୍ତ୍ୱ, ରଜ ଓ ତମ ଏହି ତିନିଗୁଣ ବନ୍ଧନର କାରଣ ଅଟନ୍ତି । ସତ୍ତ୍ୱଗୁଣ ଯେ ବନ୍ଧନର କାରଣ ଏ କଥା ଗୀତାର ନିମ୍ନଲିଖିତ ଶ୍ଳୋକରେ କୁହାଯାଇଅଛି ।

*ତତ୍ର ସତ୍ତ୍ୱଂ ନିର୍ମଳତ୍ୱାତ୍ ପ୍ରକାଶକମନାମୟଂ*
*ସୁଖ ସଙ୍ଗେନ ବଧ୍ନାତି ଜ୍ଞାନ ସଙ୍ଗେନ ଚାନଘ !*

ଅର୍ଥ - ହେ ଅନଘ ! ସତ୍ତ୍ୱ ଗୁଣ ନିର୍ମଳ, ଉଜ୍ଜ୍ୱଳ ଓ ଅନାମୟ ଥିବାରୁ ତାହା ମନୁଷ୍ୟକୁ ସୁଖ ଓ ଜ୍ଞାନ ସଙ୍ଗେ ଆବଦ୍ଧ କରେ ।

ଏପରି ସ୍ଥଳେ ସତ୍ତ୍ୱଗୁଣର ଆଶ୍ରୟ ନେବାକୁ ଗୀତାକାର କଦାଚ କହିନାହାନ୍ତି । ମାତ୍ର ଏହି ଅଯୌକ୍ତିକ ଅର୍ଥର ଅନ୍ଧାନୁସରଣ ପ୍ରାୟ ସବୁ ଟୀକାକାର କରିଅଛନ୍ତି । କେବଳ ମହାତ୍ମାଗାନ୍ଧି ଏପରି ଅର୍ଥ କରିନାହାନ୍ତି । ସେ ଅର୍ଥ କରିଅଛନ୍ତି ''ସତ୍ୟ ବସ୍ତୁରେ ରୁଅ ।'' ମାତ୍ର ଏହି ଅର୍ଥ ମଧ ଠିକ୍ ନୁହେଁ, କାରଣ ମୂଳ ଶ୍ଳୋକରେ ସତ୍ୟସ୍ଥ ନଥାଇ ''ସତ୍ତ୍ୱସ୍ଥ'' ଅଛି । ଆଉ ମଧ କେବଳ ବିଶିଷ୍ଟ ବ୍ୟକ୍ତି ମାନଙ୍କୁ ସତ୍ୟବସ୍ତୁରେ ରହିବା ପାଇଁ ଉପଦେଶ ଦେବାକୁ ଶ୍ରୀକୃଷ୍ଣ ଜଗତକୁ ଆସି ନଥିଲେ । ସେ ଯଦି ଦିନେ ବିଶ୍ୱଗୁରୁ ଭାବରେ ଜଗତକୁ ଆସିଥିଲେ, ସେ ଆସିଥିଲେ ରମା ବାଉରୀଠାରୁ ରାମଚନ୍ଦ୍ର ମହାପ୍ରଭୁଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟକ୍ତିଙ୍କୁ ସତ୍ତ୍ୱସ୍ଥ ହୋଇ କର୍ମ କରିବାକୁ ଉପଦେଶ ଦେବା ପାଇଁ । ବର୍ତ୍ତମାନ ବୁଝନ୍ତୁ ''ସତ୍ତ୍ୱସ୍ଥ ହୁଅ'' ଏହି କଥାଟି ଗୀତାର ସର୍ବପ୍ରଧାନ କଥା ଓ ସମ୍ପୂର୍ଣ୍ଣ ନୂଆ କଥା । କାରଣ ଏହି କଥାଟିରେ ଗୀତାକାର ବ୍ୟକ୍ତିଗତ ସ୍ୱାତନ୍ତ୍ର ବ୍ୟକ୍ତିଗତ ପୂର୍ଣ୍ଣତା, ବ୍ୟକ୍ତିଗତ ସ୍ୱାଧୀନତା ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ମାନବ ସମାଜରେ ପ୍ରକୃତ ସାମ୍ୟବାଦ ପ୍ରତିଷ୍ଠା କରିଅଛନ୍ତି ।

ଦ୍ୱିତୀୟ ଶ୍ଳୋକଟି ଆଲୋଚନା କରିବା ପରେ ''ସତ୍ତ୍ୱସ୍ଥ ହୁଅ'' ଏହି କଥାଟିର ବିଶେଷତ୍ୱ, ନୂତନତ୍ୱ ଓ ପ୍ରକୃତ ଅର୍ଥ ସଂଶୟ ଶୂନ୍ୟ ହୋଇ ବୁଝିପାରିବେ ।

ଦ୍ୱିତୀୟ ଶ୍ଳୋକର ଅନ୍ୱୟ- ସୁ ଅନୁଷ୍ଠିତାତ୍ ପରଧର୍ମାତ୍ ବିଗୁଣଃ ସ୍ୱଧର୍ମଃ ଶ୍ରେୟାନ୍; ସ୍ୱଭାବନିୟତଂ କର୍ମ କୁର୍ବନ୍ (ନରଃ) କିଲ୍ବିଷଂ ନ ଆପ୍ନୋତି ।

ଅର୍ଥ - ଉତ୍ତମରୂପେ ଅନୁଷ୍ଠିତ ପରଧର୍ମ ଅପେକ୍ଷା ନିଜର ବିଗୁଣ ସ୍ୱଧର୍ମ ଶ୍ରେଷ୍ଠ

ଅଟେ । ସ୍ୱଭାବନିୟତ କର୍ମ କରିବାରେ ମନୁଷ୍ୟ ପାପ କରେ ନାହିଁ ।

ଏହି ଶ୍ଳୋକର ପୂର୍ବ ଧାଡ଼ିଟି ହେଉଛି :-

*ସ୍ୱ କର୍ମଣା ତମଭ୍ୟର୍ଚ୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।*

*ଅନ୍ୱୟ - ସ୍ୱ କର୍ମଣା ତମ୍ ଅଭ୍ୟର୍ଚ୍ଚ୍ୟ ମାନବଃ ସିଦ୍ଧିଂ ବିନ୍ଦତି ।*

ଅର୍ଥ - ନିଜ ନିଜର କର୍ମଦ୍ୱାରା ତାଙ୍କୁ ଅର୍ଥାତ୍ ସେହି ଅବ୍ୟକ୍ତ ସତ୍ତାଙ୍କୁ ଅଭ୍ୟର୍ଚ୍ଚନା କରି (ଗୀତାର ଶ୍ରୀକୃଷ୍ଣଙ୍କୁ ନୁହେଁ) ପ୍ରତ୍ୟେକ ମନୁଷ୍ୟ ସିଦ୍ଧି ଲାଭ କରେ ।

ଏହି ଶ୍ଳୋକର ପୂର୍ବ ଶ୍ଳୋକରେ ଅଛି -

*ସ୍ୱେ ସ୍ୱେ କର୍ମଣ୍ୟଭିରତଃ ସଂସିଦ୍ଧିଂ ଲଭତେ ନରଃ ।*

ଅର୍ଥ - ନିଜ୍ ନିଜ କର୍ମରେ ନିଯୁକ୍ତ ରହି ପ୍ରତ୍ୟେକ ବ୍ୟକ୍ତି ସିଦ୍ଧି ଲାଭ କରେ (୧୮ଶ-୪୫) ପୂର୍ବୋକ୍ତ ଦୁଇଟି ଉକ୍ତିରୁ ବୁଝନ୍ତୁ ଯେ ଏଠାରେ ଥିବା ସ୍ୱଧର୍ମ କଥାଟିର ଅର୍ଥ ସ୍ୱକର୍ମ ଏବଂ ସ୍ୱକର୍ମ କଥାଟିର ଅର୍ଥ ନିଜର ସ୍ୱଭାବନିୟତ କର୍ମ । ପୂର୍ବୋକ୍ତ ଶ୍ଳୋକର ପରବର୍ତ୍ତୀ ଧାଡ଼ିଟି ହେଉଛି -

*ସହଜଂ କର୍ମ କୌନ୍ତେୟ ! ସଦୋଷମପି ନ ତ୍ୟଜେତ୍ ।*

ଅର୍ଥ - ହେ କୌନ୍ତେୟ ! ନିଜର ସହଜାତ କର୍ମ ଅର୍ଥାତ୍ ନିଜର ଜାତ ହେବା ସଙ୍ଗେ ଜାତ ହୋଇଥିବା କର୍ମ ଦୋଷଯୁକ୍ତ ହୋଇଥିଲେ ମଧ୍ୟ ତାହା ପରିତ୍ୟାଗ କରିବା ଉଚିତ୍ ନୁହେଁ । କ୍ରମାନ୍ୱୟରେ ଥିବା ଏହି କୋଡୋଟି ଧାଡ଼ିରୁ ବୁଝନ୍ତୁ ଯେ, ସ୍ୱଭାବନିୟତ କର୍ମ, ସହଜାତ କର୍ମ, ସ୍ୱକର୍ମ ଓ ସ୍ୱଧର୍ମ ଏମାନେ ସମସ୍ତେ ଏକା କଥା । ପୁଣି ବୁଝନ୍ତୁ ଯେ ଏହି ସ୍ୱକର୍ମ ବା ସ୍ୱଧର୍ମ ବିଗୁଣ ବା ଦୋଷଯୁକ୍ତ ହୋଇଥିଲେ ମଧ୍ୟ ତାହା ପରିତ୍ୟାଗ କରି ଉତ୍ତମରୂପେ ଅନୁଷ୍ଠିତ ପରଧର୍ମର ଓ ପରିତ୍ୟାଗ କରି ଉତ୍ତମରୂପେ ଅନୁଷ୍ଠିତ ପରଧର୍ମର ଓ ପରକର୍ମର ଅନ୍ଧାନୁସରଣ କରିବା ଉଚିତ ନୁହେଁ ।

ବର୍ତ୍ତମାନ ବୁଝନ୍ତୁ ଯେ ସ୍ୱକର୍ମ ବା ସ୍ୱଭାବନିୟତ କର୍ମ ଜାତିଗତ ବା ବର୍ଣ୍ଣଗତ କମ୍ୟୁନିଷ୍ଟ ଓ ସୋସିଆଲିଷ୍ଟ୍ ଇତ୍ୟାଦି କୌଣସି ବିଶ୍ୱାସଗତ କର୍ମ ମଧ୍ୟ ନୁହେଁ । ଏହା ପ୍ରତ୍ୟେକ ବ୍ୟକ୍ତିର ବ୍ୟକ୍ତିଗତ କର୍ମ ଏଥିରେ ସନ୍ଦେହ ନାହିଁ । ଆପଣ ଚାକିରୀ କରି, ଆପଣଙ୍କର ଭାଇ ବ୍ୟବସାୟ କରି, ଆପଣଙ୍କର ସ୍ତ୍ରୀ ରୋଷେଇ କରି, ନିଜ ନିଜ କର୍ମରେ ସେହି ଅବ୍ୟକ୍ତ ସତ୍ତାଙ୍କୁ ଅଭ୍ୟର୍ଥନା କରିପାରିଲେ ପ୍ରତ୍ୟେକ ବ୍ୟକ୍ତି ସିଦ୍ଧି ପାଇ ପାରିବେ ଏହାହିଁ ଗୀତାକାରଙ୍କର ମତ । ମାତ୍ର ଆମ୍ଭେମାନେ ବହୁକାଳରୁ ଗୋଷ୍ଠୀ ବା ସମଷ୍ଟିଗତ ହୋଇ ରହି ନିଜ ନିଜ ଗୋଷ୍ଠୀଗତ କର୍ମ ସବୁର ଅନ୍ଧାନୁସରଣ କରୁଥିବାରୁ

ଶଙ୍କରାଚାର୍ଯ୍ୟଙ୍କଠାରୁ ଆରମ୍ଭ କରି ମହାତ୍ମାଗାନ୍ଧିଙ୍କ ପର୍ଯ୍ୟନ୍ତ ସମସ୍ତେ ଏଠାରେ ଥିବା ସ୍ୱକର୍ମ କଥାଟିକୁ ''ବର୍ଣ୍ଣାନୁଯାୟୀ କର୍ମ'' ବୋଲି ଅର୍ଥ କରିଅଛନ୍ତି । ଏହି ସବୁ ଏବଂ ଆଉ ଅନେକ ଅଯୌକ୍ତିକ ଓ ବିପରୀତ ଅର୍ଥ ଦେଖି ଗୀତାର ଗୋଟିଏ ସର୍ବଜନ ବୋଧ୍ୟ ଓ ସର୍ବଜନ ପ୍ରଯୁଜ୍ୟ ନୂଆ ଭାଷା ଲେଖି ଗୀତା ଓ ଗୀତାସଂକ୍ରାନ୍ତ କେତେ ଖଣ୍ଡି ବହି ମୁଁ ପ୍ରକାଶ କରିଅଛି ।

ଗୀତାର ଭାଷା ଏତେ ସରଳ ଏବଂ ପ୍ରତ୍ୟେକ ଶ୍ଳୋକ ସହିତ ପରବର୍ତ୍ତୀ ଶ୍ଳୋକ ସବୁର ଏପରି ଘନିଷ୍ଠ ସମ୍ବନ୍ଧ ଅଛି ଯେ ଓଡ଼ିଆ କିମ୍ବା ବଙ୍ଗଳା କିମ୍ବା ହିନ୍ଦୀ ଯେ କୌଣସି ଭାଷା ଜାଣିଥିବା ଯେ କୌଣସି ବ୍ୟକ୍ତି କେବଳ ସନ୍ଧି ବିଚ୍ଛେଦ କରିଦେଲେ ଗୀତାର ପ୍ରକୃତ ଶିକ୍ଷା ଓ ନୂତନ ଶିକ୍ଷା ଗ୍ରହଣ କରିପାରିବେ ଏବଂ ବ୍ୟକ୍ତିଗତ ଜୀବନରେ ତାହା ପ୍ରୟୋଗ କରି ଉପକୃତ ହେବେ । ମାତ୍ର ଦୁଃଖର କଥା ଏହି କି ଆମ୍ଭମାନଙ୍କର ମସ୍ତିଷ୍କ ଦ୍ୱିତୀୟ ଅଧ୍ୟାୟ ୫୩ଶ୍ଳୋକରେ ଥିବା ''ଶ୍ରୁତି-ବିପ୍ରତିପନ୍ନା'' ଥିବାରୁ ଅର୍ଥାତ୍ ଶାସ୍ତ୍ରଗତ ଏବଂ ଦେଶାଚାର, କୁଳାଚାର ଓ ଲୋକାଚାରଗତ ଅନ୍ଧବିଶ୍ୱାସ ଓ ଅନ୍ଧାନୁସରଣ ଇତ୍ୟାଦିରେ ପୂର୍ଣ୍ଣ ହୋଇ ରହିଥିବାରୁ ଅର୍ଥାତ୍ ପୁରୁଣା ବିଷୟ ସବୁରେ ପୂର୍ଣ୍ଣ ଥିବାରୁ ଆମ୍ଭେମାନେ ଗୀତାର ନୂତନ ଉପଦେଶ ଗ୍ରହଣ କରିପାରୁନାହୁଁ । ତେଣୁ ସତ୍ୟ ଉପରେ ପ୍ରତିଷ୍ଠିତ ଗୀତାର ନୂତନ ଶିକ୍ଷା ଗ୍ରହଣ କରିବାକୁ ହେଲେ ମସ୍ତିଷ୍କରୁ ସବୁପ୍ରକାର ପୁରୁଣା ଜ୍ଞାନ ଏବଂ ପୁରୁଣା ବଦ୍ଧମୂଳ ଧାରଣା ସବୁ ସମ୍ପୂର୍ଣ୍ଣ ରୂପେ ଦୂର କରି ଦେବାକୁ ହେବ । ମୁଁ ହିନ୍ଦୁ, ମୁଁ ମୁସଲମାନ, ମୁଁ ଭାରତବାସୀ, ମୁଁ ଆମେରିକାବାସୀ, ମୁଁ ଶାକ୍ତ, ମୁଁ ବୈଷ୍ଣବ, ମୁଁ କମ୍ୟୁନିଷ୍ଟ, ମୁଁ ସୋସିଆଲିଷ୍ଟ ଇତ୍ୟାଦି ଅହମିକା ମଧ ଦୂର କରିଦେଇ ମୁଁ ମନୁଷ୍ୟ ଏହି ଧାରଣାକୁ ମସ୍ତିଷ୍କରେ ସ୍ଥାନ ଦେବାକୁ ହେବ - କାରଣ ଗୀତା ହେଉଛି **ମନୁଷ୍ୟ ଧର୍ମ ।**

## ବିଶ୍ୱକଲ୍ୟାଣ ସମିତି

ଯେଉଁ ଅନ୍ଧବିଶ୍ୱାସ ଓ ଅନ୍ଧାନୁସରଣ ପ୍ରତ୍ୟେକ ବ୍ୟକ୍ତିଙ୍କୁ ତେଣୁ ସମସ୍ତ ମାନବ ସମାଜକୁ ବହୁକାଳ ହେଲା ଆକ୍ରମଣ କରି ପ୍ରତ୍ୟେକ ବ୍ୟକ୍ତିର ତେଣୁ ସମସ୍ତ ମାନବ ସମାଜର ଧ୍ୱଂସ ସାଧନ କରୁଅଛି, ସେହି ଅନ୍ଧବିଶ୍ୱାସ ଓ ଅନ୍ଧାନୁସରଣ ମୂଳରେ ଗୀତା କୁଠାରଘାତ କରି ସତ୍ୟର ଓ ସରଳତାର ପ୍ରତିଷ୍ଠା କରିଅଛି ବୁଝିପାରି ଗୀତା-ଧର୍ମ ସଂସ୍ଥାପନ କରିବା ଅଭିପ୍ରାୟରେ ୧୯୪୯ସାଲରେ ମୁଁ ବିଶ୍ୱକଲ୍ୟାଣ ସମିତି ସ୍ଥାପନ କଲି । କେତେଜଣ ବନ୍ଧୁଙ୍କ ପ୍ରସ୍ତାବ ଅନୁସାରେ୧୯୫୪ ସାଲରେ ''ବିଶ୍ୱକଲ୍ୟାଣ'' ନାମକ ଖଣ୍ଡିଏ ତ୍ରୈମାସିକ ପତ୍ରିକା ପ୍ରକାଶ କରିଅଛି । ଗହଣାରେ ଓ ନ୍ୟାୟ ନିମିତ୍ତରେ ବୃଥାଡ଼ମ୍ବର ଦେଖାଇ ସାଧାରଣ ଲୋକେ ଦାରିଦ୍ର୍ୟ ଦୁଃଖ ବରଣ କରୁଥିବା ଅନେକ ଦିନରୁ ଅନୁଭବ କରିଥିବାରୁ ଗୀତା-ଧର୍ମ ସଂସ୍ଥାପନ କରିବା ସଙ୍ଗେ ସଙ୍ଗେ ଅନ୍ଧବିଶ୍ୱାସ,

ଅନ୍ଧାନୁସରଣ ଓ ବୃଥାଡ଼ମ୍ବର ବରୁଦ୍ଧରେ ସଂଗ୍ରାମ କରବା ମଧ ଏହ ପତ୍ରକାର ମୁଖ୍ୟ ଉଦ୍ଦେଶ୍ୟ ରଖିଲି । ଏହି ପତ୍ରିକାର ବାର୍ଷିକ ଚାନ୍ଦା ଅଗ୍ରିମ ଏକଟଙ୍କା ମାତ୍ର ।

## ଆଦର୍ଶ ଉପବୀତ ଗ୍ରହଣ

## ଓ

## ଉପବୀତ ବିସର୍ଜନ

ବ୍ରାହ୍ମଣ ପିଲାମାନଙ୍କର ଉପନୟନ କର୍ମ କଲାବେଳେ କେବଳ ସେହି ଉପନୟନ କର୍ମଟି କରା ନ ଯାଇ ପୁଂସବନ, ସୀମୋନ୍ତୋନୟନ, ଜାତକର୍ମ ଇତ୍ୟାଦି ପୂର୍ବବର୍ତ୍ତୀ ସାତଟି କର୍ମ ଏବଂ ବେଦାରମ୍ଭ ଓ ସମାବର୍ତ୍ତନ ଏହି ପରବର୍ତ୍ତୀ ଦୁଇଟି କର୍ମର ଅନ୍ଧାନୁସରଣ ସମ୍ପୂର୍ଣ୍ଣ ଅଯୌକ୍ତିକ ଓ ଅଶାସ୍ତ୍ରୀୟ ବୋଲି ବୁଝିପାରି ମୁଁ ଅନ୍ଧାନୁସରଣ ଓ ଉପନୟନ ନାମକ ଖଣ୍ଡିଏ ବହି ପ୍ରକାଶ କଲି । ତାପରେ କେତେ ଜଣଙ୍କୁ ପ୍ରକୃତ କଥା ବୁଝାଇ ୮ଟି ବ୍ରାହ୍ମଣ ପିଲାଙ୍କର ଉପନୟନ କର୍ମ କଲାବେଳେ ଅନ୍ୟ ନଅଟି କର୍ମର ଅନ୍ଧାନୁସରଣ ନକରାଇ କେବଳ ଉପନୟନ କର୍ମଟି ଖୁବ୍ ଅଳ୍ପ ଖର୍ଚ୍ଚରେ କରାଇଲି । ମାତ୍ର ସମାଜରେ ବର୍ତ୍ତମାନ ଗୁରୁ ଗୃହ ଇତ୍ୟାଦି କିଛି ନଥିବା ସ୍ଥଳେ ଉପନୟନ କର୍ମର ଅନ୍ଧାନୁସରଣରେ ମଧ ଅର୍ଥବ୍ୟୟ କରି ଅନ୍ଧତାକୁ ପ୍ରଶୟ ଦେବା ଅନିଷ୍ଟପ୍ରଦ ବୋଲି ବୁଝିପାରି ଆଦର୍ଶ ଉପବୀତ ଗ୍ରହଣ ନାମକ ଖଣ୍ଡିଏ ବହି ପ୍ରକାଶ କଲି । ରକ୍ଷଣଶୀଳ ଅଶିକ୍ଷିତ ଲୋକେ ପଇତା ପିନ୍ଧିବାର ଅନ୍ଧାନୁସରଣ ସହଜରେ ଛାଡ଼ିପାରିବେ ନାହିଁ ଜାଣି ୧୯୫୪ ସାଲରେ ଏକସଙ୍ଗେ ୨୦ଜଣ, ୧୯୫୫ ସାଲରେ ଏକସଙ୍ଗେ ୨୫ଜଣ, ୧୯୫୬ସାଲରେ ଥରେ ୯ଜଣ, ଥରେ ୪ଜଣ ଏବଂ ଏହି ବର୍ଷ ଗତ ଦୁଇ ମାସରେ ୪ଜଣ ବ୍ରାହ୍ମଣ ପିଲାଙ୍କର ଉପବୀତ ଗ୍ରହର ପାଇଁ ପ୍ରତ୍ୟେକ ପିଲାଠାରୁ ଏକଟଙ୍କା ନିଆଯାଏ । ଏତେ ଦିନର ଶାସ୍ତ୍ରବିଧି ସବୁ ଲୋପ ହେଉଅଛି କହି ରକ୍ଷଣଶୀଳ ବ୍ରାହ୍ମଣମାନେ ପ୍ରଥମେ ମୋଠାରେ ଦୋଷାରୋପ କରୁଥିଲେ ଏବଂ "ଟଙ୍କାକିଆ ପଇତାଘର ହେଉଅଛି" କହି କେତେ ଲୋକ ଉପହାସ ମଧ କରୁଥିଲେ । ମାତ୍ର ଏବେ ସମାଜର ଅନ୍ଧତାଦୋଷ ଏବଂ ମୋର ଅଭିପ୍ରାୟ ପ୍ରାୟ ସମସ୍ତେ ବୁଝିପାରି ନୀରବ ରହିଲେଣି । ଏକ ସଙ୍ଗେ ଉପବୀତ ଗ୍ରହଣ କରିଥିବା ବ୍ରାହ୍ମଣ ପିଲାମାନଙ୍କର ଦୁଇଟି ଚିତ୍ର ପରପୃଷ୍ଠାରେ ଦିଆଗଲା ।

## ପ୍ରତିଜ୍ଞାପତ୍ର

ଯେଉଁମାନଙ୍କର ଅନ୍ଧବିଶ୍ୱାସ ଦୂର ହୋଇ ନାହିଁ ସେମାନେ ସେମାନଙ୍କର ପିଲାମାନଙ୍କର ଉପବୀତ ଗ୍ରହଣ କର୍ମ କରନ୍ତୁ ଏବଂ ସେଥିପାଇଁ ଏକ ଟଙ୍କାରୁ ଅଧିକ ଅର୍ଥବ୍ୟୟ କରନ୍ତୁ ନାହିଁ । ମାତ୍ର ଯେଉଁମାନେ ପଇତା ପିନ୍ଧିବାଟା ଅନ୍ଧବିଶ୍ୱାସ,

ଅନ୍ଧାନୁସରଣ ଓ ସମାଜର ଅନିଷ୍ଟପ୍ରଦ ବୋଲି ଉପଲବ୍ଧି କରୁଅଛନ୍ତି ଏବଂ ଶ୍ରେଣୀବିହୀନ ସମାଜ ଓ ନୂଆ ଦୁନିଆ ଗଠନ କରିବାର ଆବଶ୍ୟକତା ବୁଝିଅଛନ୍ତି ସେମାନେ ପଇତା ବିସର୍ଜନ୍ନ କରନ୍ତୁ ଏବଂ ନିଜର ପିଲାମାନଙ୍କୁ ପଇତା ପିନ୍ଧାଇବାରୁ ନିବୃତ୍ତ ହୁଅନ୍ତୁ ।

ନିମ୍ନଲିଖିତ ବ୍ୟକ୍ତିମାନେ ଉପବୀତ ବିସର୍ଜନ କରିଅଛନ୍ତି ଏବଂ ସେମାନଙ୍କର ପିଲାମାନଙ୍କୁ ପଇତା ପିନ୍ଧାଇବେ ନାହିଁ ବୋଲି ପ୍ରତିଜ୍ଞାବଦ୍ଧ ହୋଇ ବିଶ୍ୱକଲ୍ୟାଣ ସମିତିକୁ ପ୍ରତିଜ୍ଞାପତ୍ର ଲେଖି ଦେଇଅଛନ୍ତି । ଅନ୍ୟମାନଙ୍କଠାରୁ ମଧ ଏପରି ପ୍ରତିଜ୍ଞାପତ୍ର ଲେଖି ନିଆଯିବ ଏବଂ ସାମାଜିକ ଭେଦଭାବ ସମ୍ପୂର୍ଣ୍ଣ ରୂପେ ଦୂର କରିବାକୁ ହେବ ଏହା ମୋର ଅଭିପ୍ରାୟ ।

୧ - ଡ଼ାକ୍ତର ଶ୍ରୀ ବିଭୂତି ଭୂଷଣ ତ୍ରିପାଠୀ (ଆଠଗଡ଼)

୨ - ଶ୍ରୀ ନିଶାମଣି ତ୍ରିପାଠୀ (ପଟିଆ)

୩ - ଶ୍ରୀ ରାଜକିଶୋର ମହାପାତ୍ର (ବନ୍ତଳା)

୪ - ଶ୍ରୀ ମୁରଲୀଧର ହୋତା (ବରହମ୍ପୁର)

## ଆଦର୍ଶ ବିବାହ

୧୯୫୧ ସାଲରେ ବ୍ରାହ୍ମଣ ସମାଜରେ ଗୋଟିଏ ଆଦର୍ଶ ବିବାହ କଟକ ଷ୍ଟେସନ ନିକଟରେ କନ୍ୟା ପିତାଙ୍କର ବସାଘର ଠାରେ ସମ୍ପନ୍ନ ହୋଇଅଛି । ବର ପିତା ହେଉଛନ୍ତି ଧର୍ମଶାଳା ଥାନା ପ୍ରତାପପୁର ଶାସନର ଜଣେ ରକ୍ଷଣଶୀଳ ନୈଷ୍ଠିକ ବ୍ରାହ୍ମଣ ଏବଂ କନ୍ୟା ପିତା ହେଉଛନ୍ତି ବଡ଼ଚଣା ଥାନା ପୁରୁଷୋତ୍ତମପୁର ଶାସନର ଶ୍ରୀ ଦାମୋଦର କର । ସେ ରେଳ ବିଭାଗ ଇଞ୍ଜିନିୟର ଅଫିସ୍‌ରରେ ଷ୍ଟୋର କ୍ଲର୍କ କାମ କରନ୍ତି । ବର ପିତା ଓ କନ୍ୟା ପିତାଙ୍କ ଅନେକ ଦିନ ଅନେକ କଥା ବୁଝାଇବା ପରେ ସେମାନେ ମୋର ନିର୍ଦ୍ଦେଶ ଅନୁସାରେ ବିବାହ କର୍ମ ସମ୍ପନ୍ନ କରିବାକୁ ରାଜି ହେଲେ । ସାତ ଆଠ ଅଣା ମାତ୍ର ଖର୍ଚ୍ଚରେ ଏହି ବିବାହ ବୈଦିକ ବିଧିରେ ସମ୍ପନ୍ନ ହୋଇଅଛି । ପୁରୋହିତ ବ୍ରାହ୍ମଣଙ୍କୁ ମୁଁ କହିଲି - "ତୁମ୍ଭେ ବଡ଼ ବଡ଼ କଦଳି ପତ୍ରରେ ୧୦-୧୨ ସେର ଅରୁଆ ଚାଉଳ ନଦେଇ ପଣସ ପତ୍ରରେ ଛଟାଙ୍କିଏ ଚାଉଳ ଦେଲେ ଏବଂ ୨ସେର କି ୨ସେର ଘିଅ ନପୋଡ଼ି ଅଧ ଛଟାଙ୍କିଏ ଘିଅ ହୋମ କଲେ ଚଳିବ "। ସବୁ ମନ୍ତ୍ର ବୋଲିଯାଇପାର କୌଣସି ଆପତ୍ତି ନାହିଁ। ପୁରୋହିତ ଓ ଅନ୍ୟମାନେ ବୁଝିପାରିଲେ ଏବଂ ତାହାହିଁ କରାଗଲା । ମୋଟ କଥା ଏହି କି ଅର୍ଥ ସାପେକ୍ଷ ଅନ୍ଧାନୁସରଣ ଓ ବୃଥାଡ଼ମ୍ବର ସମ୍ପୂର୍ଣ୍ଣରୂପେ ପରିତ୍ୟାଗ କରାଗଲା । ବର କନ୍ୟାଙ୍କ ପାଇଁ ନୂଆ ଲୁଗା ଓ ନୂଆ ଶାଢ଼ୀ

ବରପିତା ଓ କନ୍ୟାପିତା ନିଜେ ନିଜେ କିଣି ଆଣିଲେ । କାରଣ ଜଣେ ଦେଇଥିବା ଲୁଗା କିମ୍ବା ଶାଢ଼ୀ ଅନ୍ୟର ମନକୁ ନ ଗଲେ ଦୁଇ ବନ୍ଧୁଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିବା ଆଜିକାଲି ସ୍ୱାଭାବିକ ଏବଂ ତାହା ପ୍ରାୟ ସର୍ବତ୍ର ଘଟୁଛି । ବନ୍ଧୁବାନ୍ଧବମାନଙ୍କଠାରୁ କୌଣସି ପ୍ରକାର ବନ୍ଧୁ ବେଭାର ଗ୍ରହଣ କରାଯାଇନାହିଁ । କନ୍ୟା ପକ୍ଷର ୨-୩ଜଣ ବନ୍ଧୁଙ୍କଠାରୁ ଦୁଇଅଣା ମାତ୍ର ବନ୍ଧୁ ବେଭାର ରଖାଯାଇଅଛି । ନିମନ୍ତ୍ରଣ ପତ୍ରରେ ଲେଖାଥିବା ମୋର ଅନୁରୋଧ ଅନୁସାରେ କନ୍ୟା ପିତାଙ୍କର ଜଣେ ବନ୍ଧୁ ଟ୪୦୦/- ବେତନ ପାଉଥିଲେ ମଧ୍ୟ ଦୁଇଅଣା ମାତ୍ର ବନ୍ଧୁ ବେଭାର ମନିଅର୍ଡ଼ର କରି ପଠାଇ ବନ୍ଧୁତା ରକ୍ଷା କରିଥିଲେ ବିବାହ ସଭାରେ ଉପସ୍ଥିତ ଥିବା ଜଣେ ପ୍ରଫେସରଙ୍କୁ ଦେଖାଇ ଦେଇ ମୁଁ କହିଲି - ''ପ୍ରଫେସର୍ କାମ କରୁଥିବା ଏପରି ଜଣେ ଯୋଗ୍ୟ ବରପାତ୍ର କିଣିବାକୁ ହେଲେ କନ୍ୟାପିତାଙ୍କୁ ଅନ୍ତତଃ ନଗଦ ଟ୩୦୦୦/-ଙ୍କା ଇତ୍ୟାଦିରେ ଅନ୍ତତଃ ଟ୫୦୦୦/- ପଡୁଛି । ଏଥିପାଇଁ ଅନେକ ଏହା ସ୍ୱଚକ୍ଷୁରେ ଦେଖି ସୁଦ୍ଧା ଲୋକେ କନ୍ୟା ଘରେ ପ୍ରୀତିଭୋଜନରେ ଯୋଗ ଦେଇ ପଲଉ, ମାଛ, ପାୟସ, ରସଗୋଲା ଇତ୍ୟାଦି ''ଖାଇବା ଦୁଃଖର କଥା ।'' ମୋଠାରୁ ଏହି କଥା ଶୁଣି ଜଣେ ଭଦ୍ରଲୋକ କହିଲେ - ''ଆପଣ କଣ ଆମ୍ଭମାନଙ୍କୁ ଏଠାରେ ଖାଇବାକୁ ବାରଣ କରୁଅଛନ୍ତି ?'' ମୁଁ କହିଲି - ''ଏଠାରେ ଭାତ, ଡ଼ାଲି ଓ ତରକାରୀ ଛାଡ଼ି ଏସବୁ କିଛି କରାଯାଉନାହିଁ । ପ୍ରତ୍ୟେକ ବ୍ୟକ୍ତି ପାଇଁ ଚାରିଅଣାରୁ ଅଧିକ ଖର୍ଚ୍ଚ କରାଯାଇନାହିଁ । ଏହା ଦେଖି କାଳେ ଆପଣମାନେ କନ୍ୟାପିତା ଉପରେ ଦୋଷାରୋପ କରିବେ, ସେଥିପାଇଁ ମୁଁ ପୂର୍ବରୁ ସତର୍କ କରିଦେଲି ।'' କନ୍ୟାକୁ ଗୋଟିଏ ପଇସାର ସୁଦ୍ଧା ଗହଣା ଦିଆଯାଇନାହିଁ । ଏପରି ବିବାହ କରିବା ଫଳରେ ଲୋକେ ପାରିବାରିକ ଜୀବନ ଯାତ୍ରାକୁ କିପରି ସରଳ ଓ ସୁଖପ୍ରଦ କରିପାରିବେ ତାହା ବିବାହ ସଭାରେ ଉପସ୍ଥିତ ସମସ୍ତଙ୍କୁ ବୁଝାଇ ଦିଆଯାଇଥିଲା । ଏହି ଦମ୍ପତିଙ୍କର ଚିତ୍ର ଓ ପରିଚୟ ଦିଆଗଲା ।

ବର -

ଥାନା ଧର୍ମଶାଳା ପ୍ରତାପପୁର ଶାସନ ଶ୍ରୀ ଲୋକନାଥ ଦାସଙ୍କ ଦ୍ୱିତୀୟ ପୁତ୍ର ଶ୍ରୀମାନ ଉମାନାଥ

କନ୍ୟା -

ଥାନା ବଡ଼ଚଣା, ପୁରୁଷୋତ୍ତମପୁର ଶାସନ ଶ୍ରୀ ଦାମୋଦର କରଙ୍କ ଦ୍ୱିତୀୟା କନ୍ୟା ଶ୍ରୀମତୀ ବିନ୍ଦୁ ବାସିନୀ ।

ବ୍ରାହ୍ମଣ ସମାଜରେ ୧୯୫୩ ସାଲରେ ଆଉ ଗୋଟିଏ ଆଦର୍ଶ ବିବାହ ବାରିପଦାରେ ସମ୍ପୂର୍ଣ୍ଣ ହୋଇଅଛି । ପୂର୍ବଲିଖିତ ବିବାହ ପରି ଏହି ବିବାହରେ ମଧ୍ୟ ବେଦୀ ଖର୍ଚ୍ଚ ସାତ ଆଠ ଅଣାରୁ ଅଧିକ ହୋଇନାହିଁ । ବରପକ୍ଷ ଓ କନ୍ୟାପକ୍ଷ ମଧ୍ୟରେ କୌଣସି ପ୍ରକାର ବନ୍ଧୁ ବେଭାର ଆଦାନ ପ୍ରଦାନ ହୋଇନାହିଁ । ପ୍ରୀତିଭୋଜନରେ ଭାତ, ଡାଲି, ତରକାରୀ

ଛଡା ପାୟସ, ସରଗୋଲା, ପଲାଉ, ମାଂସ ଇତ୍ୟାଦି ଦିଆଯାଇ ନାହିଁ। ବେଦ ବିଧି ସବୁ ଲୋପ ହେଉଅଛି ବୋଲି ଜଣେ ଦୁଇଜଣ ରକ୍ଷଣଶୀଳ ବ୍ରାହ୍ମଣ ଆପତ୍ତି କରିବାରୁ ମୁଁ କହିଲି- ''ବରପାତ୍ରଙ୍କ ବେକରେ କିମ୍ବା ତାଙ୍କର ବଡଭାଇ ବିଭୂତି ବାବୁ ଡାକ୍ତରଙ୍କ ବେକରେ ପଇତା ନାହିଁ।'' ଏପରିସ୍ଥଳେ ''ଯଥା ରାବଣସ୍ୟ ମନ୍ଦୋଦରୀ'' ଇତ୍ୟାଦି ମନ୍ତ୍ରସବୁ କେଉଁ ପୁରୋହିତ କାହିଁକି ପଢିବ ? ଆଉମଧ ବରପାତ୍ର ଜଣେ ଆସିଷ୍ଟାଣ୍ଟ ଇଞ୍ଜିନିୟର। କନ୍ୟାପିତାଙ୍କୁ ଏପରି ଜଣେ ବରପାତ୍ର ପାଇବାକୁ ହେଲେ ଆଜିକାଲି ଅନ୍ତତଃ ଟ ୧୦,୦୦୦ଙ୍କା ଖର୍ଚ୍ଚ କରିବାକୁ ପଡନ୍ତା। ବେକରେ ପଇତା ନାହିଁ ବୋଲି କନ୍ୟାପିତା ଏପରି ବରପାତ୍ର ଛାଡିପାରିବେ କି ?- ''ଆଦର୍ଶ ବିବାହ କରିଥିବା ଦମ୍ପତିଙ୍କର ପରିଚୟ''-

ବର- ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀ ଏମ୍.ଡି. ଙ୍କର ସାନଭାଇ ଆସିଷ୍ଟାଣ୍ଟ ଇଞ୍ଜିନିୟର ଶ୍ରୀ ବିଜୟାନନ୍ଦ ତ୍ରିପାଠୀ

କନ୍ୟା- ଶ୍ରୀ ହରିଶ୍ଚନ୍ଦ୍ର ମହାପାତ୍ରଙ୍କର ଜ୍ୟେଷ୍ଠାକନ୍ୟା ଶ୍ରୀମତୀ କମଳା।

ଏପରି ଆଉ କେତୋଟି ଆଦର୍ଶ ବିବାହ କରିବାକୁ ଚେଷ୍ଟା କରୁଅଛି ଏବଂ ସେଥିପାଇଁ ଅବିବାହିତ ଯୁବକମାନଙ୍କଠାରୁ ପ୍ରତିଜ୍ଞାପତ୍ର ଲେଖିନେଉଅଛି। ଦୁଇଜଣଙ୍କର ପ୍ରତିଜ୍ଞାପତ୍ର ଦିଆଗଲା।

## ଆଦର୍ଶ ବିବାହ ଓ ପ୍ରତିଜ୍ଞାପତ୍ର

ବିଶ୍ୱକଲ୍ୟାଣ ସମିତିର ନିର୍ଦ୍ଦେଶ ଅନୁସାରେ ଯାବତୀୟ ଅନ୍ଧବିଶ୍ୱାସ, ଅନ୍ଧାନୁସରଣ ଓ ବୃଥାଡମ୍ବର ପରିତ୍ୟାଗ କରି ଗହଣାରେ ଓ ନ୍ୟାୟ ନିମିତ୍ତରେ ଅଯଥା ଅପବ୍ୟୟରୁ ନିବୃତ୍ତ ହୋଇ ଆଦର୍ଶ ବିବାହ କରବି ଏବଂ ଆଦର୍ଶ ଜୀବନ ଓ ଆଦର୍ଶ ପରିବାର ଗଠନ କରିବି। ମୋର ବୟସ ବର୍ତ୍ତମାନ ୨୬ ବର୍ଷ। ମୁଁ ମାଟ୍ରିକ ପାସ୍ କରି ବର୍ତ୍ତମାନ ବଲାଙ୍ଗିର ଏକ୍ସପେରିମେଣ୍ଟାଲ୍ ଫାର୍ମରେ ଓଭରସିଅର କାର୍ଯ୍ୟ କରେ।

**ଶ୍ରୀ ଲକ୍ଷ୍ମୀଧର ଦାଶ**

ଦଣ୍ଡମୁହାଣ, ଖୋର୍ଦ୍ଧା, ଜିଲ୍ଲା-ପୁରୀ

ଯାବତୀୟ ଅନ୍ଧବିଶ୍ୱାସ, ଅନ୍ଧାନୁସରଣ ଓ ବୃଥାଡମ୍ବର ପରିତ୍ୟାଗ କରି ଗହଣା ଓ ନ୍ୟାୟ ନିମିତ୍ତରେ ଅଯଥା ଅର୍ଥ ବ୍ୟୟରୁ ନିବୃତ ହୋଇ ପାରିବାରିକ ଜୀବନ ଯାତ୍ରାକୁ ସରଳ ଓ ସୁଖପ୍ରଦ କରିବି। ବିଶ୍ୱକଲ୍ୟାଣ ସମିତିର ନିର୍ଦ୍ଦେଶ ଅନୁସାରେ ବିବାହ କରି ଆଦର୍ଶ-ଜୀବନ ଓ ଆଦର୍ଶ ପରିବାର ଗଠନ କରିବି। ଯେଉଁ ଅନ୍ଧତାଦୋଷ ସମାଜର ଯାବତୀୟ ଅମଙ୍ଗଳର ମୂଳ କାରଣ ସେ ସବୁ ପରିତ୍ୟାଗ କରିବା ପ୍ରତି ନିରନ୍ତର ଦୃଷ୍ଟି ରଖିବି। ମୋର ବୟସ ବର୍ତ୍ତମାନ ୨୩ ବର୍ଷ। ମୁଁ ଏବର୍ଷ ଆଇ.ଏ. ପରୀକ୍ଷା ଦେଉଛି।

**ଅନ୍ତର୍ଯ୍ୟାମୀ ଶତପଥୀ**

ଧଳପୁର, ଢେଙ୍କାନାଳ



## ବର

ଥାନା ଧର୍ମଶାଳା ପ୍ରତାପପୁର ଶାସନ ଶ୍ରୀ ଲୋକନାଥ ଦାସଙ୍କ ଦ୍ୱିତୀୟ ପୁତ୍ର **ଶ୍ରୀମାନ୍ ଉମାନାଥ ।**

## କନ୍ୟା

ଥାନା ବଡ଼ଚଣା, ପୁରୁଷୋତ୍ତମପୁର ଶାସନ ଶ୍ରୀ ଦାମୋଦର କରଙ୍କ ଦ୍ୱିତୀୟା କନ୍ୟା **ଶ୍ରୀମତୀ ବିନ୍ଦୁବାସିନୀ ।**

## ॥ ପରିଶିଷ୍ଟ ॥

### *BAIRAGI MISRA*
### *ASVIEWED BY SCHOLARS*

**Excerpts from :**

Birendra Kumar Nayak., "Orissa Vidyasagar and Widow Remarriage", ***The Golden Book of Vidyasagar***, Calcutta, 1993.

"**...** in the year 1930, an organisation viz., **Nari Mangala Samiti** (Women's Welfare Committee) came into being in Cuttack city under the leadership of one Bairagi Misra. This organisation engaged itself in the primary task of performing widow remarriages. The first widow remarriage under the auspices of this organisation took place on **23rd November 1933**. In fact, on this day, three widow remarriages were performed in the presence of some public luminaries of the city like Janakinath Basu, father of Netaji Subash Chandra Basu, and Balakrsna Kar, founder of the Oriya daily ***MATRUBHUMI*** and then editor of a literary periodical ***SAHAKARA***. The widow remarriage movement under the leadership of Bairagi Misra attained remarkble succsess. Yet he had understood that so long as people were not convinced on the strength of logic and wisdom of great sages, the justification of widow remarriage would be always looked down upon. In 1946, in his booklet entitled ***ANYAYA BAIDHABYA O BIDHABA BIBAHA*** (Unjust widowhood and widow marriage) he wrote :

> "In this last ten or twelve years in the different parts of Orissa, more than a thousand child widows have been given in marriage and some widow remarriages have also been performed. Now that it has begun it should not be assumed that it will continue. Instead,, the people should be enlightened about the appropriate provision in favour of widow remarriage enunciated by the great sages of ancient India."

In his attempts to explain, he quoted three verses from VASISTHA SAMHITA on the strength of which he differentiated the status of child widows from that of young women widows vis-a-vis their remarriage and asserted that widow remarriage was in consonance with the provisions of the *"Hindu"* scriptures.

These verses are :

***Adbhirbbaca ca daittayam mriyetatho boro yadi,***
***na ca mantropanita syat kumari pitureba sa,,***
***yabaccedahrta kanya mantrairyadi na samskrta,***
***anyasmai bidhibaddeya yathakanya tathaiba sa,,***
***panigrahe mrte bala kebalam mantrasamskrta,***
***sa ca twaksatayonih syat punah samskaramarhatiti,,***

" The girl who has been offered to a boy through water and words but (the offer) has not been solemnised through appropriate hymns,such girl shall remain a virgin and within the control of her father; if the boy dies the girl retains her virginity till she is not offered through proper solemnisation by recital of hyman and, therefore, such a girl can be given in marriage to another boy; even if the girl is offered through proper solemnisation and yet the groom dies before consummating the marriage, the young women can be again given in marriage."

Thus as long as the marriage is not solemnised accroding to the appropriate provisions (known as durbbyakhyata karma) which is the case in the child marriages or even if it is solemnised without the marriage being consummated, the girl can be married off to another man. So Bairagi Misra held that remarriage of child widows was in perfect agreement with the scriptures. He fiercely opposed every attempt to prevent a child widow given in marriage and also every compulsion on a widow to observe celibacy while she desired marriage. In fact he wrote, "while claiming to live by ***sastras***, and yet compelling the child widows to observe widowhood and young women widows to observe celibacy we are moving in the direction opposite to the one held by ***sastras*** and thus we are moving towards death, destruction and hell." In his steadfast journey towards making widow remarriage an acceptable proposition in the Oriya society, he also took care to see that his two sons married child widows. The influence was so deep that his second son married again a child widow after his wife, who was also a child widow, died. One feels as if in Bairagi Misra, Vidyasagar was born in Orissa, and the query of Rajendra in the novel ***KANAKLATA*** (Nanda Kishore Bal). "Will Vidyasagar not be born in Orissa ?" has a positive answer."

"... Those educated youths also felt that widow remarriage in Oriya society could take place only through a social reform movement. They had also reliased that to build a successful social reform movement, the leadership of someone like Vidyasagar was necessary. Yet, till the emergance of Bairagi Misra this could not be possible."

• • •

"... the widow remarriage movement could not build up in the nineteenth century Orissa as it did in comtemporary Maharashtra. But from the way the subject of widow remarriage was discussed and even debate one could see the Oriya society preparing itself gradually to assimilate widow remarriage into its customs. In Bairagi Misra, Oriya society found the initiator and the ensuing movement looked so similar to the one that took place in Bengal."

" The introduction of widow remarriage is the noblest work I have done in my life," said Vidyasagar. From the *sincerity and single-mindedness with which Bairagi Misra pursued the task of widow remarriage*, it appears that he too had taken it *as the mission of his life*. The anxiety behind the widow remarriage was primarily due to their concern for the helplessness of a woman. Every social reformer, be he Vidyasagar or Bairagi Misra, who had fought for the acceptability of widow remarriage had laboured under the premise that men's protection alone could remove woman's helplessness."

## ସଦାଶିବ ମିଶ୍ର, ‘‘ବୈରାଗୀ ମିଶ୍ରେ’’ *ମାତୃପୂଜାମଣ୍ଡପ*, କଟକ, ୧୯୮୬ ରୁ ନିର୍ବାଚିତ ଅଂଶ:

‘‘ ବୈରାଗୀ ଚରଣ ମିଶ୍ରଙ୍କର ପରଲୋକ ହେଲା ୧୯୬୬ ମସିହା ଫେବୃୟାରୀ ୧୯ ତାରିଖରେ । ମୃତ୍ୟୁ ପୂର୍ବରୁ ସେ କହି ଯାଇଥିଲେ, ତାଙ୍କର ଶବକୁ କୋକେଇରେ ବାନ୍ଧି ମଣିଷଙ୍କ କାନ୍ଧରେ ଶ୍ମଶାନକୁ ନିଆଯିବ ନାହିଁ । କୌଣସି ପ୍ରକାର କ୍ରିୟାକର୍ମ, ଶୁଦ୍ଧିଶ୍ରାଦ୍ଧ କରାଯିବ ନାହିଁ । ତାଙ୍କର ଅଭିଳାଷ ଅନୁଯାୟୀ ଡାକ୍ତର ବିଭୂତି ତ୍ରିପାଠୀଙ୍କ ମଟର ଗାଡିରେ ବୈରାଗୀ ମିଶ୍ରଙ୍କର ଶବ ଶ୍ମଶାନକୁ ନିଆଗଲା । ସେଠାରେ ଅଗ୍ନି ସଂଯୋଗ କରାଗଲା ।

... ତାଙ୍କର ଜୀବନବ୍ୟାପୀ ଅଭିଯାନର ପରିପୂର୍ଣ୍ଣ ପରିଣତି । ...’’

• • •

''... ବୈରାଗୀ ମିଶ୍ରେ ବିଶ୍ୱବିଦ୍ୟାଳୟରୁ ଉପାଧି ପାଇନଥିଲେ । ବିଦ୍ୱାନ ପଣ୍ଡିତ ନଥିଲେ; ପଦସ୍ଥ ଅଫିସର ନଥିଲେ; କୌଣସି ମର୍ଯ୍ୟାଦା, କ୍ଷମତା କିମ୍ବା ପଦବୀର ଅଧିକାରୀ ହୋଇନଥିଲେ । ଥିଲେ କଚେରୀରେ ସ୍ୱଳ୍ପ ବେତନଭୋଗୀ ଜଣେ କିରାଣୀ । ଚାକିରି ଶେଷ ବେଳକୁ ମାସିକ ବେତନ ଥିଲା ସତୁରି ଟଙ୍କା । ମାତ୍ର ପଞ୍ଚତିରିଶ ଟଙ୍କା ପେନସନରେ ଅବସର ଗ୍ରହଣ କଲେ । ଜନ୍ମ ହୋଇଥିଲେ ଏବଂ ଅପୂର୍ବ ସଂଗ୍ରାମ କରିଥିଲେ ଏକ ରାଜ୍ୟରେ, ଯେଉଁଠାରେ ଅଛି ସମ୍ପଦ, କ୍ଷମତା, ପଦବୀ ଏବଂ ଆସନର ପ୍ରତିଷ୍ଠା । ନାହିଁ ସାଧନା ଏବଂ କୃତିତ୍ୱର ମୂଲ୍ୟାୟନ....''

• • •

''... ଏ ସମସ୍ତ ଭିତରେ ବୈରାଗୀ ମିଶ୍ରଙ୍କର ତରୁଣ ପ୍ରାଣ ବିଦ୍ରୋହ କରି ଉଠିଲା ।

... ବ୍ୟାଧିର ସଂଖ୍ୟା ତିନିଗୋଟି । *ଅନ୍ଧବିଶ୍ୱାସ, ଅନ୍ଧାନୁସରଣ ଏବଂ ବୃଥା ଆଡମ୍ବର* । ଏ ସମସ୍ତ ବିରୋଧରେ ସଂଗ୍ରାମ କରିବାକୁ ହେବ । ସୁସ୍ଥ ସମାଜ ଗଢ଼ିବାକୁ ହେବ । ବୈରାଗୀ ମିଶ୍ରେ ଅଭିଯାନ ଆରମ୍ଭ କଲେ ।

ବ୍ରତ, ବିବାହ, ଶୁଦ୍ଧିଶ୍ରାଦ୍ଧ ଏବଂ ସବୁର ଆନୁଷଙ୍ଗିକ ଓ ପରିପୂରକ ବିଭିନ୍ନ ଆଚାର ଏବଂ ନିମିତ୍ତ ଭିତରେ ଏ ତିନିଗୋଟି ବ୍ୟାଧି ବ୍ୟାପକ ଭାବରେ ପ୍ରବେଶ କରିଛି ।...''

• • •

''... ବୁଦ୍ଧି, ବିବେକ, ବିଚାର ଅପସରି ଯାଇଛି । ବୈରାଗୀ ମିଶ୍ରେ ଲାଗି ପଡ଼ିଲେ ସେଇ ତିନୋଟି ବ୍ୟାଧିର ନିରାକରଣ ପାଇଁ । *ଏ ସଂସ୍କାର ପାଇଁ ଲୋଡ଼ା ଆତ୍ମ ବିଶ୍ୱାସ* । ଏ ସଂଗ୍ରାମ ପାଇଁ ଲୋଡ଼ା ନିର୍ଯାତନା ପାଇଁ ପ୍ରସ୍ତୁତି । ନ୍ୟସ୍ତସ୍ୱାର୍ଥ ବହୁ ତଥାକଥିତ ନୀତି ନିର୍ଦ୍ଦେଶକଙ୍କର ପ୍ରତିରୋଧ ବିରୋଧରେ ଅଟଳ ରହିବାକୁ ହେବ ।...''

'' ... ସେ ବ୍ରହ୍ମବିଦ୍ୟା ସମିତିର ସଭ୍ୟ ହୋଇଥିଲେ । ପ୍ରତି ମାସରେ ଥରେ ସମବେତ ଭୋଜନ କରାଯାଉଥିଲା । ସେ ପ୍ରସ୍ତାବ କଲେ, ଥରେ ଜଣେ ମୁସଲମାନ ପାଚକ ରୋଷେଇ କରିବେ । ଏଥିରେ ଦୁଇଜଣ ସଭ୍ୟ ସମ୍ମତ ହେଲେ ନାହିଁ ବୈରାଗୀ ମିଶ୍ରେ ସେ ସମିତିରୁ ବାହାରିଗଲେ । ନିଜ ଘରେ ଶୁଣ୍ଡି ସମ୍ପ୍ରଦାୟର ଗୋଟିଏ ଦମ୍ପତ୍ତିଙ୍କୁ ନେଇ ଗୋଟିଏ ଏକାନ୍ନ ପରିବାର ସୃଷ୍ଟି କଲେ । ଘୋର ପ୍ରତିବାଦ ହେଲା । ବୈରାଗୀ ମିଶ୍ରେ ଟଳିବାର ଲୋକ ନୁହଁନ୍ତି । ସେ ଲୋଡୁଥିଲେ ଏଇ ନିର୍ଲ୍ଲଜ ପ୍ରତିବାଦ । ଉପବୀତ ଗ୍ରହଣରେ ଗରିବ ଲୋକେ...

... ନିର୍ଯାତନା ଭୋଗୁଥିଲେ । ବୈରାଗୀ ମିଶ୍ରେ କୋଡ଼ିଏ ପଚିଶ ଜଣ ପିଲାଙ୍କୁ ଏକାଠି ବସାଇ, ଜଣପିଛା ମାତ୍ର ଟଙ୍କାଟିଏ ଖର୍ଚ୍ଚରେ ପଇତା ପିନ୍ଧାଇଲେ ... ତାଙ୍କର ସବୁଠାରୁ ବଡ଼ ଅଭିଯାନ ବିବାହ ପଦ୍ଧତିର କଳଙ୍କ ଦୂର କରିବା ଲାଗି । ... ''

''ସେତେବେଳେ ବାଲ୍ୟ ବିବାହ ପ୍ରଚଳିତ ଥିଲା । ବହୁ ସମ୍ପ୍ରଦାୟରେ; ବିଶେଷତଃ ବ୍ରାହ୍ମଣ

ସମାଜରେ । ଯୌତୁକ, ଶରଧା ଏବଂ [illegible] ପରିଣତ ହୋଇଥିଲା । ପରଦା, ଓଢ଼ଣା ଏବଂ ନିରକ୍ଷରତା ଆଦି [illegible] । ଏ ସମସ୍ତ ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ***୧୯୩୦ ମସିହାରେ*** ବୈରାଗୀ ମିଶ୍ର ଏକ ***ନାରୀ ମଙ୍ଗଳ ସମିତି*** ଗଢ଼ିଲେ । ସ୍ଥାନ ତାଙ୍କରି ଘର । ସେକ୍ରେଟାରୀ ଏବଂ ସଭାପତି ସେ ନିଜେ ।

୧୯୩୦ ମସିହାରେ ହରବିଲାସ ଶାରଦା ଆଣିଥିବା ଏକ [illegible] ପ୍ରସ୍ତାବ କେନ୍ଦ୍ର ବିଧାନସଭାରେ ଗୃହୀତ ହେଲା । ଚଉଦ ବର୍ଷରୁ ଅଳ୍ପ ବୟସର କନ୍ୟାଙ୍କୁ ବିବାହ ଦିଆଯାଇପାରିବ ନାହିଁ । ବାଲ୍ୟବିବାହ କିନ୍ତୁ ଚାଲିଲା ...''

''... ଗୋପନରେ, ପ୍ରକାଶ୍ୟରେ ମଧ୍ୟ ବିବାହ ଚାଲିଲା । ବନ୍ଦ ହେଲା ନାହିଁ । କେହି ଏ ବିବାହରେ ମୋକଦ୍ଦମା କରିବାକୁ ବା ସାକ୍ଷ୍ୟ ଦେବାକୁ ବାହାରିଲେ ନାହିଁ । ବୈରାଗୀ ମିଶ୍ରେ ସାହସରେ ବାହାରି ପଡ଼ିଲେ । ଗୋଟିକ ପରେ ଗୋଟିଏ ଲେଖାଏଁ ମୋକଦ୍ଦମା କଚେରୀରେ ଆଣି ଥୋଇଲେ । ସବୁଥିରେ ବରକର୍ତ୍ତା ଏବଂ କନ୍ୟା ପିତାଙ୍କ ଉପରେ ଜୋରିମାନା ଦଣ୍ଡ ମିଳିଲା । ଅନ୍ଧ ବିଶ୍ୱାସୀ ଲୋକେ ବାଲ୍ୟବିବାହ ଲାଗି ବୈରାଗୀ ମିଶ୍ରଙ୍କର ଅନୁମତି ଭିକ୍ଷା କଲେ । ଉତ୍କୋଚ ଯାଚିଲେ । ଅନୁନୟ ବିନୟ କଲେ । ହତାଶ ହେଲେ । ବୈରାଗୀ ମିଶ୍ରଙ୍କୁ ମାଡ ମାରିବା ପାଇଁ, ତାଙ୍କ ଉପରେ ଅତ୍ୟାଚାର କରିବା ପାଇଁ ଧମକ ଦେଲେ । କିଛିଦିନ ସେ ରାତିରେ ବସାରୁ ବାହାରି ପାରିଲେ ନାହିଁ । ମାତ୍ର ସେ କ'ଣ ଟଳିବାର ଲୋକ ? କ୍ରମେ ସହରରୁ ବାଲ୍ୟବିବାହ ବନ୍ଦ ହୋଇଆସିଲା ।...''

• • •

''... ବୈରାଗୀ ମିଶ୍ରେ ଏହି ବାଲ୍ୟ ବିଧବାଙ୍କର ବିବାହ ପାଇଁ ବଦ୍ଧପରିକର ହେଲେ । ବର ଶବ୍ଦର ଅର୍ଥ ଶ୍ରେଷ୍ଠ, ଯାହାକୁ ବରଣ କରାଯାଏ । ବେଦୀ ଉପରେ ମନ୍ତ୍ରରେ ବୋଲାଯାଏ, ''ଆବୟୋଃ ବରକନ୍ୟୟୋଃ'' । ସେ ଦିନ ବିବାହ କର୍ମ ଆରମ୍ଭ ହୁଏ । ରହେ ଦୁର୍ବାକ୍ଷତ ପର୍ଯ୍ୟନ୍ତ । ଦୁର୍ବାକ୍ଷତ ପରେ 'ବର' ହୁଏ 'ଧବ', ଅର୍ଥାତ ସ୍ୱାମୀ । ବାଲ୍ୟ ବିଧବା ବାସ୍ତବରେ ଧବ ପାଇ ନାହିଁ, ପାଇଥିଲା ବର । ତେଣୁ ହୋଇଛି 'ବିବରା' । ବୈରାଗୀ ମିଶ୍ରେ ଶାସ୍ତ୍ରରୁ ନୀତିସୂତ୍ର ବାହାର କଲେ । ଏମାନଙ୍କୁ ପୁଣି ବିବାହ ଦେବା ଶାସ୍ତ୍ରାନୁମୋଦିତ । ବୈରାଗୀ ମିଶ୍ରେ ଏ ପଦ୍ଧତି ପରିବେଷଣ କଲେ ।''

• • •

''... ମିଶ୍ରେ ଖୋଜି ବୁଲିଲେ । କେଉଁଠାରେ କିଏ ଅଛି ଅଭାଗୀ ବିବରା କନ୍ୟା । ସେମାନଙ୍କୁ ଆଣି ରଖିଲେ ନାରୀମଙ୍ଗଳ କେନ୍ଦ୍ରରେ, ଅର୍ଥାତ୍ ଆପଣା ଘରେ । ବରପାତ୍ର ଖୋଜି ଗୋଟିକ ପରେ ଗୋଟିଏ ବିବାହ ଦେଲେ ଏହି ନାରୀମଙ୍ଗଳ କେନ୍ଦ୍ରରେ ।...''

'' କଟକ ସହର ଭିତରେ ଗୋଟିଏ ପୁରାତନ ପ୍ରତିଷ୍ଠିତ ହାଇସ୍କୁଲ । ସେଥିରେ ଜଣେ ସଂସ୍କୃତ ଶିକ୍ଷକ । ... ପଣ୍ଡିତେ ଅତିମାତ୍ରାରେ ରକ୍ଷଣଶୀଳ । ସେ ନିରନ୍ତର, ଯନ୍ତ୍ରତନ୍ତ୍ର ବୈରାଗୀ

ମିଶ୍ରଙ୍କର କୁତ୍ସାରଟନା କରନ୍ତି । ଏହାଙ୍କ ଯୋଗୁ ଧର୍ମ ନଷ୍ଟ ହୋଇଗଲା ବୋଲି ଗାଳିବର୍ଷଣ କରନ୍ତି । ଦୁର୍ଭାଗ୍ୟ ବଶତଃ ତାଙ୍କର ଗୋଟିଏ ବାଲ୍ୟ ବିବାହିତା କନ୍ୟା ବିବରା ହୋଇଗଲା । ଏ ଦୁଃସମ୍ବାଦ ପଣ୍ଡିତେ ବୈରାଗୀ ମିଶ୍ରଙ୍କ ପାଖକୁ ପଠାଇଲେ । ପ୍ରତିକାର ଲୋଡିଲେ । ବୈରାଗୀ ମିଶ୍ରେ ଉତ୍ତର ଦେଲେ । ଗୋଟିଏ ନିର୍ଦ୍ଦିଷ୍ଟ ଦିନ ପଣ୍ଡିତେ ସନ୍ଧ୍ୟାବେଳେ ଘରୁ ଅନୁପସ୍ଥିତ ରହିବେ । ବୈରାଗୀ ମିଶ୍ରେ ତାଙ୍କ ଘରୁ କନ୍ୟାଟିକୁ ଘେନି ଆସିବେ । ପଣ୍ଡିତେ ସାଇପଡ଼ିଶାରେ କହିବେ- ତାଙ୍କ ଝିଅ ସ୍ୱଇଚ୍ଛାରେ ଚାଲିଗଲା । ଝିଅ ସେତେବେଳକୁ ଯୁବତୀ ହୋଇଥିଲା । ବୈରାଗୀ ମିଶ୍ରେ ତାଙ୍କୁ ନିଜ ଘରକୁ ନେଇ ଆସିଲେ । ଚାରିମାସ ପରେ ନିଜ ପୁଅ ସଙ୍ଗେ ବିବାହ କରିଦେଲେ ।... ''



'' ବୈରାଗୀ ମିଶ୍ରଙ୍କର ଦୁଇଟିଯାକ ପୁଅ ବିବରା ବିବାହ କରିଛନ୍ତି । ଖାଲି ସଂସ୍କାର ପାଇଁ ସେ ସଂସ୍କାର କରିନଥିଲେ । ସମାଜର ଦୁର୍ଗତି ତାଙ୍କୁ ବାଧିଥିଲା । ସଂସ୍କାର ଧର୍ମରେ ସେ ଦୀକ୍ଷିତ ହୋଇଥିଲେ... ।''

'' ମାତ୍ର ବୈରାଗୀ ମିଶ୍ରଙ୍କର ଅଭିଯାନ ସଫଳ ହୋଇଛି । ସେ ବହୁ ହତଭାଗିନୀଙ୍କ ଆଖିରୁ ଲୁହ ପୋଛିଛନ୍ତି । ପୁରୁଷର ପାଶବିକ ନିଷ୍ଠୁରତା ହ୍ରାସ ପାଇଛି । ସେ ବହୁ କନ୍ୟାଦାନର ସୁକୃତି ଅର୍ଜନ କରିଛନ୍ତି ।... ବୈରାଗୀ ମିଶ୍ରେ ତାହାଠାରୁ ଅଧିକ (ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ଠାରୁ) ଅସାଧ ସାଧନ କରି ନିକ୍ଷିପ୍ତ ହୋଇଗଲେ ବିସ୍ମୃତିର ଗର୍ଭରେ ।''

***Excerpts from*** :

Gouranga Charan Nayak, "Bairagi Mishra &His Gita",***Essays on Religion***, Mayur Publications, Bhubaneswar, 1989.

" Bairagi Charan Mishra was born in a joint Brahmin family in the Village of Mulabasant of Cuttack district of Orissa (India) in the year 1885. He was the eldest son of Pandit Padmalochan Mishra. As he had not only no faith in horoscope reading but also considered it positively harmful, he had torn his own horoscope to pieces and therefore, his exact date of birth was not available. Only on the basic of the date of birth of his cousin brother who was 3 to 4 month older, it could be ascertained that he was born either in the month of November or December, 1885.

As child marriages were the usual practice in those days, Mishra had married when he was quite young, at the age of 14 in the year 1899. He passed his entrance examination from Baripada H.E. School in the year 1906 at the age of 21 and executed higher studies for two years in the Cuttack College. But on account of

financial problems he could not continue further and enterned into the Government services as a clerk.

Bairagi Mishra will be long remenbered at the least on two counts, first for the drastic measured taken by him in reforming the society with a view to eradicating all sorts of blind beliefs and superstitions, and secondly for his highly original interpretation of the teachings of the Gita. He was vehemently opposed to the pompous, expensive, yet meaningless practices followed in marriage functions and sacred-thread ceremonies. In order to eradicate blind superstitions from the mind of the people by educating them properly *'Visva Kalyana Samiti' was founded by him in the year 1949,* and in *1954 a quarterly journal, '**VISVA KALYANA**' was also published by him. He had founded an institution called 'Nari Mangala Samiti' for the upliftment of the women folk too.* Child-widows were rampant in the society in those days on account of the custom of child-marriage, and these widows were subjected to endless, unspeakable torture throughout the rest of their life. Bairagi Mishra fought against this inhuman custom of the society with great vigour and unprecedented firmness of will amidst vehement opposition from the conservative and orthodox society, *and introduced remarriage system for these unfortunate child-widows.* He also *fought against dowry system in those days and was infact successful in organising a number of such marriages* without dowry himself.

Bairagi Mishra's day to day life was of course full of suffering and torture on account of vehement opposition on almost all fronts to the drastic reformative measures taken by him for curing the society of its deep-rooted malaise,but his was undoubtedly a wonderful life . He passed away at a ripe old age of 80 in the year 1966. Before his death he had instructed his son meticulously as follows to abstain from the blind practices sanctioned for such ocasions :- *'After my expiry, take my body in the vehicle of Dr. Bibhuti Tripathy and cremate it at Sati Chaura. Do not observe any formalities or customs such as **Ardhapatha Sraddha**. On your return from the cremation groung you must do the cooking and take your food as usual. Do not invite any Brahmin on the 10th or the 11th day for **Sraddha** ceremony etc. You know that I have observed no such custom or formality on the death of your*

*grand mother,mother or your elder brother. This is the final instruction of a father to his son, and it must be carried out by all means'.* It is certainly not an exaggeration when Chakradhara Mohapatra in his preface to the collection of the works of Bairagi Mishra ***(Bairagi Mishra Granthavali)*** describes him as a 'wonderful creature' who can be compared only to such wonderful personalities as *Buddha*, *Socrates* and *Tailanga Swami.* For my part I can say without hesitation that any nation should be proud of having given birth to a genius of his stature and India is indeed fortunate to be in a position to claim him as one of its illustrious sons in the present century.

Bairagi Mishra's most important and lasting contribution to the world of thought is his unique and novel insight into the teachings of the Gita. He was no respector of persons; ***his one and only concern was truth***, and nothing but truth as it is revealed to the pure discriminative understanding ***(Pavitra Viveka-buddhi).*** *For the first time in the history of thought Bairagi Misra pointed out that the Gita advocated search for truth through pure reason, not by absolute surrender of human will to a Divine Will.* Mishra in this regard differed from almost all the great commentators of the Gita such as Acharya Sankara, Sridhara Swami, Mahatma Gandhi etc. The Gita, for him, is a treatise advocating the cause of pure reason, **...**

**...** maximum emphasis is laid by him on the Gita passage, ***'Buddhausaranamanviccha***' (Take resert to reason), which according to him constitutes the key to the understanding of the Gita **...** "



" **...** Gita, according to Bairagi Mishra, teaches us to have independent and free thinking in all matters of conduct and life. The pernicious habit of depending on the greatness of the great and a blind following of innumerable faith and dogma need to be forshaken forthwith and one should change the course of one's life by taking recourse to free and independent thinking - this is the main teaching of the Gita, according to Bairagi Mishra. So the real and the novel teaching of the Gita according to him can be grasped only when we learn how to think independently. "

• • •

" ... The Gita has been regarded as the most abstruse, esoteric, treatise, and 'Take resort to me (Sri Krishna) alone' ***(Mamekam saranam braja)*** is the most esoteric teaching of this treatise. According to Bairagi Mishra, this only means 'Take resort to Sri Krishna in the form of pure discriminative understanding.' Mishra refers in this connection to the following well-known mantra of the Kathopanisad and affirms that Sri Krishna of the Gita is the charioteer in the form of Buddhi of every human being who is constantly engaged in the battle of life. ***"Atmanam rathinam biddhi, sariram rathamevatu, Buddhim tre sarathim biddhi*** etc."

• • •

" ... Of all the commentators of the Gita, only Bairagi Mishra, a rare genius in the field, regards Buddhi sarangati as the key concept for an adequate understanding of the Gita. "

" ... Bairagi Mishra identifies Srikrishna with Viveka-buddhi or discriminative understanding and consequently ***Sri Krishna sarangati*** is the same for him as ***Buddhi saranagati***. The Gita has a single objective, that is, to introduce Srikrishna as Buddhi which alone is the world-teacher (Jagadguru). Once a reader of the Gita realises this and knows that Srikrishna as Buddhi (Pure Reason) is always available to us, if only we choose to take resort to buddhi at the time of crisis, further study of the Gita or any other religious literature for that matter will be simply unnecessary from his point of view ... "

" ... Bairagi Mishra raises his doubt in his connection by pointing out that there is no reason why the adjective ***'sankhya'*** should be added while interpreting the word ***'buddhi'*** nor is there any reason why 'buddhi' should refer to 'God' in this context ... "

•

*(ପ୍ରଥମ ସଂସ୍କରଣର ମଲାଟର ଶେଷ ପୃଷ୍ଠା)*